# ଅଙ୍ଗଦପଢ଼ି ।

ଶ୍ରୀ ଶ୍ୟାମସୁନ୍ଦର ଗନ୍ତାୟତଙ୍କ ଦ୍ୱାରା ଦ୍ୱିତୀୟବାର ପ୍ରକାଶିତ ।



Printed by Chinta Moni Das.
The Brajendra Press
CUTTACK. 1926

ମୂଲ୍ୟ ୪ ୦ ୵ ଦୁଇଅଣା ମାତ୍ର ।

# ଅଙ୍ଗଦପଡ଼ି ।



ନମଇଁ ଶ୍ରୀରାମ ଚରଣ । ସୁଜନ ଜନମାନେ ଶୁଣ ॥
ସୂର୍ଯ୍ୟବଂଶରେ ଅବତାର । ଦଶରଥ ରାଜା କୁମର ॥
ରାମ ଲକ୍ଷ୍ମଣ ଶତ୍ରୁଘ୍ନ । ଭରତ ଚାରିପୁତ୍ର ଜାଣ ।
ଧରଣୀ ଉଶ୍ୱାସିବା ପାଇଁ । ଜନ୍ମିଲେ ଚାରି ମୂର୍ତ୍ତି ହୋଇ ।
ରାବଣେଶ୍ୱର ଜାତ ହେଲା । ଦେବଙ୍କୁ ବହୁ କଷ୍ଟ ଦେଲା ।
ରାମ ଘରଣୀ ସୀତା ନାରୀ । ତାହାଙ୍କୁ ପୁଣି ନେଲା ହରି ॥
ସାବତ ଜନନୀ କୈକେୟୀ । ରାମଙ୍କୁ କଲା ସେହୁ ମାୟୀ ॥
ରାଜାଙ୍କୁ ସତ୍ୟ କରାଇଲା । ରାମ ବନଯାଉ ବୋଇଲା ॥
ଚଉଦ ବରଷ ପର୍ଯ୍ୟନ୍ତେ । ବୁଲିବେ ପର୍ବତ ବନସ୍ତେ ।
ମୋ ପୁତ୍ର ନୃପତି ହୋଇବ । ରାମ ବନକୁ ଚାଲିଯିବ ॥
ଏମନ୍ତେ ରାମଚନ୍ଦ୍ର ଶୁଣେ । ମନେ ବିଚାର ରଘୁମଣେ ॥
ବନକୁ ଯେବେ ମୁହିଁ ଯିବି । ଦୁଷ୍ଟ ଦାନବଙ୍କୁ ମାରିବି
ଏମନ୍ତ ମନେ ବିଚାରିଲେ । ସୀତା ଠାବକୁ ବିଜେ କଲେ ॥
ସୀତାଙ୍କୁ ସନ୍ଦେଶ କହଣ । ବନକୁ ବିଜେ ରଘୁରାଣ ॥
ଲକ୍ଷ୍ମଣ ବେଗେ ରାଇ ଅଣି । ବୋଲେ କୋଦଣ୍ଡ ଚାପପାଣେ ॥
କୈକେୟୀ ଜନନୀ ଆମ୍ଭର । ସତ୍ୟ କରାଇଲା ରାଜାର ॥
ଆମ୍ଭେ ବନକୁ ଚାଲିଯିବା । ପିତାଙ୍କ ସତ୍ୟକୁ ପାଳିବା ।
ଶୁଣି ଲକ୍ଷ୍ମଣ ତୋଷ ହୋଇ । ବାହାର ହେଲେ ବେନି ଭାଇ ॥
ସୀତା ଯେ ଅନ୍ତଃପୁରେ ଥିଲେ । ବାରତା ପାଇ ସେ ଆଇଲେ ।
ତାଙ୍କୁ କହିଲେ ରଘୁମଣି । ଶୁଣଗୋ ଜନକଦୁଲଣି ।
ଆମ୍ଭେ ବନକୁ ଚାଲିଯିବୁ । ପଞ୍ଚ ଅରଣ୍ୟ ବୁଲିବୁ ॥
ତୁମ୍ଭେ ଗୋ ଆନ ନ ବିଚାର । ଏଥିରୁ ଚଉଦ ବର୍ଷର ॥

ମାତାଙ୍କୁ ସେବା କରୁ ଥିବ । ଚିତ୍ତରେ ଆନ ନ ଧରିବ ।
ଶ୍ରୀରାମ ବାକ୍ୟ ଶୁଣି ସୀତା । ବୋଲନ୍ତି କିହ ଏତେ କଥା ।
ତୁମ୍ଭେ ବନକୁ ଚଳିଯିବ । ମୋ ପ୍ରାଣ କେମନ୍ତେ ରହିବ ॥
ଏମନ୍ତ ସୀତାଠାରୁ ଶୁଣି । ଦୟାସାଗର ରଘୁମଣି ।
ସୀତାଙ୍କୁ ସଙ୍ଗରେ ଘେନିଣ । ଆବର ବୀର ଲକ୍ଷ୍ମଣ ॥
ଭାଇ ଭାରିଯା ସଙ୍ଗେ ଘେନ । ବନେ ବିଜୟେ ରଘୁମଣି ।
ଶୁଣି ଅଯୋଧ୍ୟା ନର ନାରୀ । ଶୋକେ ଆକୁଳ ହୋଇକରି ।
ବୋଲନ୍ତି ରାମ ଗଲେ ବନ । ସୀତା ସହିତେ ତିନ ଜଣ ।
କେମନ୍ତେ ଧରିବା ଜୀବନ । ନଦେଖି ଶ୍ରୀରାମ ଲକ୍ଷ୍ମଣ ।
କେ ବୋଲେ ବିପରୀତ କଥା । ଯାହା ନ ଜାଣନ୍ତି ବିଧାତା ॥
କେ ବୋଲେ ମାତା ସତ୍ୟ କଲା । ରାମ ବନେ ଯାଉ ବୋଇଲା ॥
ଏମନ୍ତେ ଶୋକଭର ହେଲେ । ଯେ ଯାହା ପୁରେ ବାହୁଡ଼ିଲେ
ଦଶରଥ ଯେ ଏହା ଶୁଣି । ବିକଳେ ଲୋଟନ୍ତି ଧରଣୀ ।
ଅଧର୍ମ କଲା ଯେ କେକେୟୀ । ମୋପ୍ରାଣ ଥିବା ନ ଯୋଗାଇ ॥
ଏମନ୍ତ ବାକ୍ୟ କହୁଁ କହୁଁ । ପ୍ରାଣ ଛାଡ଼ିଲା ନିଜ ଦେହୁଁ ।
ଶ୍ରୀରାମଚନ୍ଦ୍ର ଚଳିଗଲେ । ଦଣ୍ଡକା ଅରଣ୍ୟେ ରହିଲେ ॥
ଗୋଦାବରୀ କୂଳେ ରହିଣ । ଭୁଞ୍ଜିଲେ ଫଳ ମୂଳ ମାନ ॥
ଏରୂପେ କେତେ ଦିନ ଗଲା । ରାବଣ ଭଗ୍ନୀ ପ୍ରବେଶିଲା ॥
ଦେଖିଲା ଶ୍ରୀରାମ ଲକ୍ଷ୍ମଣ । ସୀତା ସହିତେ ତିନଜଣ ॥
ଏତ ଅପୂର୍ବ ଦୁଇ ବୀର । ସଙ୍ଗରେ ଦିବ୍ୟ ନାରୀବର ॥
ଏହାକୁ ଏଥୁ ଧରିନେବି । ମୋ ଭାଇ ଛାମୁରେଣ ଦେବି ।
ମୋ ଭାଇ ହୋଇବ ହରଷ । ବିଚାରି ଯାନ୍ତେ ତାଙ୍କ ପାଶ ॥
ସୂର୍ପଣଖାର ନାସା କର୍ଣ୍ଣ । ଛେଦିଲେ ବୀର ଲକ୍ଷ୍ମଣ ॥
ତହୁଁ ଅସୁରୀ ପଳାଇଲା । ଖର ଦୂଷଣେ ଜଣାଇଲା ॥
ଶୁଣି ଦୂଷଣ ଯେ ତ୍ରିଶିର । ଚଉଦ ସହସ୍ର ଦୈତ୍ୟ ଘୋର ॥
ଧାଇଁଲା ରୋଷଭର ହୋଇ । ରାମକାଣ୍ଡରେ ନାଶ ସେହି ॥

ପଳାଇ ସୂର୍ପଣଖା ଗଲା । ରାବଣ ଆଗେ ଜଣାଇଲା ॥
ଶୁଣି ରାବଣ କୋପହୋଇ । ପୁଷ୍ପକ ବିମାନ ଆରୋହି ॥
ମାରିଚ ଦୈତ୍ୟେ ଆଜ୍ଞାଦେଲା । କୁରଙ୍ଗୀ ହୁଅ ତୁ ବୋଇଲା ॥
ରତ୍ନକୁରଙ୍ଗୀ ରୂପ ହୋଇ । ଜାନକୀ ଆଗେ ହେଲା ଯାଇ ॥
ଦେଖିଲେ ଜନକଦୁହିତା । ବୋଇଲେ ଶୁଣ ରଘୁନାଥ ॥
ଏମୃଗ ଦିଅ ମୋତେ ମାରି । ଛବା ଯେ ହେଉଛି ମୋହର ॥
ଶୁଣି ଶ୍ରୀରାମ ତୋଷ ହେଲେ । ଲକ୍ଷଣେ ରାଘବ କହିଲେ ॥
ସୀତାଙ୍କୁ ଜଗିଥିବୁ ତୁହି । ଏ ମୃଗ ମାରିବଇଁ ମୁହିଁ ॥
ଗୃହେ ବସାଇ ଲକ୍ଷ୍ମଣର । ବାହାର ହୋଇଲେ ରଘୁବୀର ॥
ଦେଖି କୁରଙ୍ଗୀ ପଳାଇଲା । ରାମ ତା ପଛେ ଗୋଡ଼ାଇଲା ॥
ଅରଣ୍ୟ ମଧ୍ୟରେ ପଶିଲା । ରାମଙ୍କୁ ଅଦୃଶ୍ୟ ସେ ହେଲା ॥
ଖୋଜନ୍ତି ପଥ ଅନୁସରି । କୋଦଣ୍ଡେ ଗୁଣ ଦେଇ କରି ॥
ପୁଣି ଦେଖିଲେ ସମ୍ମୁଖରେ । ନାରାଚ ପେଷିଲେ ସତ୍ୱରେ ॥
ମୃଗ ଡାକିଲା ଲଇକ୍ଷଣ । ରକ୍ଷ ହୋ ମୋହର ପରାଣ ॥
ସୀତା କର୍ଣ୍ଣରେ ତାହା ଶୁଣି । ରାମ ଶବଦ ପ୍ରାୟେ ମଣି ॥
ଲକ୍ଷ୍ମଣେ ଅନାଇ ବୋଇଲେ । ଯାଅ କହ ଶ୍ରୀରାମ ଡାକିଲେ ॥
ଲକ୍ଷ୍ମଣ ବୋଇଲେ ତାହା ଶୁଣି । କପଟ ଡାକିଲେ ରଘୁମଣି ॥
ସୀତସ୍ତା ବୋଇଲେ ଶୁଣିଲୁ । ତୁ କପଟ ଏବେ ନାହିଁ କଲୁ
ବନେ କି ପଡିଲା ବିପତ୍ତି । ଡାକୁ ଅଛନ୍ତି ଦାଶରଥି ॥
ନ ଯାଉ କପଟ ଶୀଘ୍ର ହୋଇ । ମନେ କି ପାଞ୍ଚୁ ଅଛୁ ତୁହି ॥
ଲକ୍ଷ୍ମଣ ବୋଇଲେ ଆଜ୍ଞା ନାହିଁ । କେସନେ ଛାଡ଼ିଯିବି ମୁହିଁ ॥
ଶୁଣି ସୀତସ୍ତା କୋପ ହେଲେ । କଟୁବଚନେ ଗାଳି ଦେଲେ ॥
ସୀତାଙ୍କ କଟୁବାଣୀ ଶୁଣି । ଲକ୍ଷ୍ମଣ କରେ ଧନୁ ଘେନି ॥
ସୀତାଙ୍କୁ ରଖି ମଢ଼ ଅରେ । ଗାର କାଟିଲେ ଛନଧାରେ ॥
ଏ ଗାର ଯେବେ ତୁ ଡେଇଁବୁ । ରାମରେ ଦୋରେଖା ହୋଇବୁ ॥
ଏମନ୍ତ ବୋଇଣ ଲକ୍ଷ୍ମଣ । ବାହାର ହେଲେ ତତକ୍ଷଣ ।

ଲକ୍ଷଣ ଯାନ୍ତେ ରାମନ୍ତ । ଏକା ରହିଲେ ମହାସତୀ ॥
ରାବଣ ଛଦ୍ମବେଶ ହୋଇ । ଆସି ମିଳିଲା ଦ୍ୱାର ଠେଇଁ ॥
ବୋଲଇ ବଚନ ସ୍ୱସ୍ୱରେ । କେ ଅଛୁ ମଠି ଆଶ୍ରମରେ ।
କ୍ଷୁଧାରେ ଜ୍ୱଳେ ମୋ ଉଦର । ଅନ୍ନ ଦେଇଣ ରକ୍ଷାକର ॥
ତୁ ଅନ୍ନ ନ ଦେଲେଯେବେମୋତେ । ମୋ ହତ୍ୟା ଲାଗିବଟି ତୋତେ
ତୁମ୍ଭେ ବୋଲାଅ ମହାସତୀ । କେଉଁ ଅଇଲୁ ତୁମ୍ଭ କତି ॥
ମୋ ପ୍ରାଣ ଯାଉଛି ବାହାର । ବାରେକ ରଖ ଗୋ ସୁନ୍ଦର ॥
ରାବଣ ବାଣୀ ଶୁଣି ସୀତା । ବସ ଅପନ୍ତୁ ମୋର ଭର୍ତ୍ତା ॥
ଅନ୍ନ ତ ନାହିଁ ମଠିଅରେ । କି ଅବା ଦେବଇଁ ତୁମ୍ଭରେ ॥
ଆମ୍ଭେ ତ ବନର ତପସ୍ୱୀ । ତୁମ୍ଭେ ଅଇଲ ଅଭ୍ୟାଗ୍ରାସୀ ॥
ଆମ୍ଭେ ବନର ଫଳ ଖାଉଁ । ବଞ୍ଚୁ କନ୍ଦର୍ପେ ଧ୍ୟାନ କେଉଁ ।
ସୀତାଙ୍କଠାରୁ ଏହା ଶୁଣି । ରାବଣ ମନେ ମନେ ଗୁଣି ।
ବଳେରେ କି ବୁଦ୍ଧି କରିବ । ଏହାକୁ କେମନ୍ତେ ମୁଁ ନେବା ॥
ଭୂମିରେ ପଡ଼ିଲାକ ଶୋଇ । ମୋ ପ୍ରାଣ ଗଲା ଏହୁଠାଇଁ ।
ଏହା କହିଣ ହେଲା ତୁନି । ପୁଣି କହିଲା ଛନ୍ଦବାଣୀ ॥
ମୋ ମୃତ୍ୟୁ ଜାଣ ଦାଅ ସିଞ୍ଚି । ଶୁଣି ଜାନକୀ ଗଲେ ଧୁଞ୍ଚି ॥
ରାବଣ ଧଇଲା ଅଞ୍ଚଳ । କାଁପ ନ କରୁ ମୋର ବୋଲ
ତୋତେ କେଁ କରୁ ଏବେ ରକ୍ଷା । ରାମର ଶକ୍ତି ତୁ ଅପେକ୍ଷା ॥
ଏତେ କହିଣ ସେ ଦଇତ୍ୟ । ସୀତାଙ୍କୁ ବସାଇଣ ରଥ ॥
ବାହୁଡ଼ିଲା ଲଙ୍କା ଭୁବନକୁ । ଜାନକୀ ଡାକିଲେ ରାମଙ୍କୁ ॥
କେଉଁଣିକି ଗଲ ରଘୁନାଥ । ନଷ୍ଟମ୍ଭୁ ହୋଇଲୁ ଅନାଥ ॥
ଅରତେ ଡାକ ଦେଲେ ସୀତା । କେଉଁଣିକି ଗଲ ଜଗନ୍ନିତା ॥
ରାବଣ ନେଉଅଛି ଧରି । କେଉଁଣିକି ଗଲ ମୃଗ ମାରି ।
ରଥ ବାହୁଡ଼ିଲା କହୁଁ କହୁଁ । ଲଙ୍କାରେ ହୋଇଲାକ ତହୁଁ ॥
ଅଶୋକ ବନରେ ରଖିଲା । ଲକ୍ଷେ ଅସୁରୀ ଜଗାଇଲା ॥
ଏଥୁଅନ୍ତରେ ଆନ ବାଣୀ । ଜନେ ଯେ ଥିଲେ ରଘୁମଣି ॥

ଲକ୍ଷ୍ମଣ ମିଳିଲେ ଛାମୁରେ । ପ୍ରଣାମ କଲେ ସେ ପଦ୍ମରେ ।
ଲକ୍ଷ୍ମଣ ଦେଖି ରାମ କହୁ । କାହିଁ ଅଇଲୁ ବଟନ ରୁହୁ ॥
ଯେବେ ଅଇଲୁ ମୋର ଭାଇ । ସଙ୍ଗେ ନ ଆଣିଲୁ କିପାଇଁ ॥
ଲକ୍ଷ୍ମଣ ଶିରେ କର ଦେଇ । ଶୁଣିମା ବ୍ରହ୍ମାଣ୍ଡ ଗୋସାଇଁ ॥
ଆପଣ ଡାକିବାର ଶୁଣି । ମୋତେ ପେଷିଲେ ଠାକୁରାଣୀ
ଶ୍ରୀରାମ ବୋଇଲେ ଉତ୍ତର । ମୃଗ ଧରିଲା ନାମ ତୋର ॥
ଲକ୍ଷ୍ମଣ କନ୍ଧେ ମୃଗ ଭାର । ଦେଇଣ ଚଳିଲେ ଆଗର ॥
ମଠିଆ ପାଖେ ଦୁଇ ଭାଇ । ସୀତାସ୍ତ୍ରୀ ବୋଲି ଡାକ ଦେଇ ।
କନକ ମୃଗ ତଳେ ଥୋଇ । ଦ୍ୱାରେ ଡାକନ୍ତି ଭ୍ରାତଗ୍ରାହ୍ମୀ ।
ଲକ୍ଷ୍ମଣ ପଶିଲେ ଭିତରେ । କହିଲେ ଶ୍ରୀରାମ ଛାମୁରେ ॥
ପର୍ଣ୍ଣକୁଟୀରେ ନାହିଁ ସୀତା । କେଣିକି ଗଲେ ଜଟକ୍ଷିତା ॥
କେଣିକି ଗଲେ ବଇଦେହୀ । ଉଚେ ଡାକନ୍ତି ଦୁଇଭାଇ ॥
ନ ପାଇ ସୀତାର ସନ୍ଦେଶ । ଚକିତେ ଚାହିଁ ଦଶଦିଶ ॥
କାନ୍ଦିଲେ ଭୂମିରେ ସେ ଲୋଟି । ଲକ୍ଷ୍ମଣ ଧରିଲେ ସନ୍ତି ॥
କର ଅଞ୍ଜଳି ଶିରେ ଦେଇ । କେଣିକି ଗଲ ପ୍ରାଣସହି ॥
ଘରୁ ଅଇଲୁଁ ଜନକଜଣ । ଆସେ ହୋଇଲୁଁ ବନସ୍ତେଣ ॥
ଆମ୍ଭେ ରହିଲୁଁ ଦୁଇଭାଇ । ଏକା ହୋଇଣ ଗଲୁ କାହିଁ ॥
ତୋତେ ନ ଦେଖିଲେକ ମୁହିଁ । ପ୍ରାଣ ଯେ ଧରି ନ ପାରଇ ॥
କେମନ୍ତେ ମୂର୍ଚ୍ଛିବ ଯେ ତୋତେ । ମୋ ପ୍ରାଣ ଯାଉ ଏ ବନସ୍ତେ
ପର୍ବତ ଲତା ତୃଣମାନ । ଚାହିଁଣ ପୁଛନ୍ତି ଶ୍ରୀରାମ ॥
ତୁମ୍ଭେ ଯେ ଥିଲ ସନ୍ନିଧାନେ । ସୀତାଙ୍କୁ ଦେଖିଲ କେସନେ ॥
ରାମର ଦେଖି ଏ ଅବସ୍ଥା । ପକ୍ଷୀଏ କହଇ ବାରତା ॥
ଲଙ୍କା ରାବଣ ଆସିଥିଲା । ସୀତାଙ୍କୁ ଧରି ସେନଗଲା ॥
ତାଠାରୁ ଶୁଣିଣ ଶ୍ରୀରାମ । କ୍ରୋଧେ ବୋଇଲେ ରଘୁନାନ
ନଷ୍ଟେ ମାରିବି ରାବଣକୁ । ଚୋରାଇ ନେଲା ମୋ ସୀତାକୁ
ଏମନ୍ତେ ମାର୍କଣ୍ଡ ଋଷି । ଶ୍ରୀରାମ ସନ୍ନିଧିକି ଆସି ॥

ଋଷିଙ୍କୁ ଦେଖି ରଘୁନାଥ । ଚରଣେ ଲଗାଇଲେ ମାଥ ॥
ଋଷି ଯେ ବାଞ୍ଛିଲେ କଲ୍ୟାଣ । ବିପତ୍ତି ହୋଇବ ଦହନ ॥
ବସିଲେ ମୃଗଛାଲ ପାଡ଼ି । କହନ୍ତି ରାମ କରଯୋଡ଼ି ॥
ରାବଣ ନାମେ ନୈଋତ୍ୟବାର । ସୀତାଙ୍କୁ ହରିନେଲା ମୋର ॥
ପିତା ସତ୍ୟ ପାଳିବା ଅର୍ଥେ । ଆଇଲୁଁ ଆମ୍ଭେ ଯେ ବନସ୍ତେ ॥
ହେ ମୁନିବର କହ ମୋତେ । ଯେମନ୍ତେ ସିଦ୍ଧ ମୁଁ ପରତେ ॥
ମୁନି ବୋଲନ୍ତି ରାମ ଶୁଣ । ନିଶ୍ଚୟ ମରିବ ରାବଣ ।
ଧରଣୀ ଭାରହର ପାଇଁ । ମନ୍ତ୍ରେ କଳ୍ପିଲ ବେଦ ଭାଇ ॥
ଏବେ ତୁ ଯାଅ ଦାଶରଥି । ଋଷ୍ୟମୂକ ପର୍ବତ କତି ॥
ସୁଗ୍ରୀବ ସଙ୍ଗେ ମିତ୍ର ହୋଇ । ବାଳିକି ବିନାଶିବୁ ତୁହି ।
ସୁଗ୍ରୀ ଭଣଜା ହନୁମନ୍ତ । ସେ ତୋତେ କହିବ ବୃତ୍ତାନ୍ତ ।
ଶ୍ରୀରାମ ତହୁଁ ଚଳିଗଲେ । ବାଟେ ହନୁମନ୍ତ ଦେଖିଲେ ।
ହନୁକୁ ଦେଖି ରଘୁନାଥ । ବୋଲନ୍ତି କାହାର ତୁ ସୁତ ॥
ଶ୍ରୀରାମପାଦେ ହନୁ ପଡ଼ି । ଉଠି ବୋଲଇ କରଯୋଡ଼ି ॥
ହେ ଦେବ ଶୁଣ ରଘୁନାଥ । କେଶରୀ ନାମେ ମୋର ତାତ ॥
ଅଞ୍ଜନା ନାମେ ଗର୍ଭଧାରୀ । ମହିଳା ବାଲି ଦଣ୍ଡଧାରୀ ।
ସୁଗ୍ରୀବ ତାହାର ଯେ ଭ୍ରାତ । ଶୁଣିମାହେଉ ରଘୁନାଥ ॥
ବାଲି ବଳବନ୍ତ ଅଟଇ । ସମସ୍ତ ରାଜାଙ୍କୁ ଜିଣଇ ॥
ସୁଗ୍ରୀ ଭାରିଯା ରମାବତୀ । ବଳେ ହରିଲ ମୂଢ଼ମତି ॥
କିଷ୍କିନ୍ଧ୍ୟା ରାଜ୍ୟେ ସେହୁ ଥାଇ । ତା ଭୟେ ସୁଗ୍ରୀ ଲୁଚିଥାଇ ॥
ଶ୍ରୀରାମ ଚନ୍ଦ୍ରେ ବିଚାରନ୍ତି । ବାଲି ପରମ ମୂଢ଼ମତି ॥
ହନୁକୁ ପୁଚ୍ଛିଁ ରଘୁବୀର । କାହିଁ ଅଛନ୍ତି ସୁଗ୍ରୀବୀର ॥
ବୋଲଇ ଶୁଣିମା ଗୋସାଇଁ । ଋଷ୍ୟମୂକରେ ସେ ଅଛଇ ॥
ପର୍ବତ କୋଟେ ଥାଏ ସେହୁ । ବାଳିକି ଦେଖା ନ ଦଅଇ ॥
ଆନନ୍ଦେ ରାମ ସଙ୍ଗ ହେଲେ । ସୁଗ୍ରୀକୁ ଦେଖିବା କହିଲେ ॥
ଆଜ୍ଞା ପ୍ରମାଣେ ହନୁ ଗଲା । ସୁଗ୍ରୀକୁ ଆଣି ଭେଟାଇଲା ॥

ଶ୍ରୀରାମ ମୂର୍ତ୍ତି ସୁଗ୍ରୀ ଦେଖି । ନିଷ୍ଟନ କଲା ଦେନି ଅକ୍ଷି ॥
ଦେଖିଲା ରାମ ଅନୁପମ । ପାଦେ ପଡ଼ିଲା ତତକ୍ଷଣ ॥
ଉଠି ଯୋଡ଼ିଲା ଦେନିକର । ବୋଲଇ ବାହୁ ମୋତେ କର ।
ବୋଲନ୍ତି ରାମ ଦଣ୍ଡଧାରୀ । କାହାର ଡରେ ଲୁଚ ଗିରି ॥
ବୋଲନ୍ତି ସୁଗ୍ରୀ ବୀରବର । ଶୁଣମା ବ୍ରହ୍ମାଣ୍ଡ ଠାକୁର ॥
ବାଳୀ ରାଜାର ଭାଇ ମୁହିଁ । ବହୁତ ଶାନ୍ତି ମୋତେ ଦେଇ ॥
କାଳେ ଅମାଞ୍ଚ ସେହୁ କଲା । ମୋର ପତ୍ନୀକି ସେ ହରିଲା ॥
ତା ଭୟେ ଲୁଚିଅଛୁ ମୁହିଁ । ଶୁଣମା ବ୍ରହ୍ମାଣ୍ଡ ଗୋସାଇଁ ॥
ଶୁଣି ଶ୍ରୀରାମ କୋପ କଲେ । ବାଳୀକି ମାରିବି ବୋଇଲେ ॥
ସୁଗ୍ରୀବ ସଙ୍ଗେ ମିତ୍ର ହେଲେ । ଆଶ୍ୱାସ ବାକ୍ୟେ ବୋଧକଲେ ।
ବୋଲନ୍ତି ହନୁମନ୍ତ ଗୃହିଁ । ଦେଖାଅ ବାଳୀ ଅଛି କାହିଁ ॥
ସୁଗ୍ରୀ ବୋଲଇ ଯୋଡ଼ି କର । ଶୁଭ ଦେବ ଶୁଣ ରଘୁବୀର ॥
ମହୀରେ ଏଡ଼ଇ ସେ ବୀର । ତା ସମ ନାହିଁ ଛନପୁର ॥
ସପତଶାଳା ତରୁବର । ଯେବେ ଛେଦିବ ରଘୁବୀର ॥
ଦୁନ୍ଦୁଭି ଅସ୍ଥିକୁ ଚରଣେ । ଫିଙ୍ଗିଦେବ ଯେବେ ଗଗନେ ॥
ତେବେ ମାରିବ ବାଳୀ ବୀର । ମନୁ ସଂଶୟ ଯିବ ମୋର ॥
ଏମନ୍ତ କହି କପିସାଇଁ । ଅସ୍ଥି ସମୀପେ ଭଲା ନେଇ ।
ଶ୍ରୀରାମ ପଦ ନଖ ମୂନେ । ଫିଙ୍ଗନ୍ତେ ପଡ଼େ ଦଶ ଯୁଣେ ॥
ସପତ ଶାଳାକୁ ଛେଦିଲେ । ସୁଗ୍ରୀ ସନ୍ଦେହ ବିନାଶିଲେ ।
ଏକା କାଣ୍ଡକେ ବାଳୀ ମାରି । ସୁଗ୍ରୀବରକୁ ରାଜା କରି ॥
ଅଙ୍ଗଦ ବାଳୀର ଆତ୍ମଜ । ତାହାକୁ କଲେ ଯୁବରାଜ ॥
ବାଳୀର ପତ୍ନୀ ତାରା ସତୀ । ସୁଗ୍ରୀର ହେଲେ ପ୍ରିୟବତୀ ॥
ସେଠାରୁ ବେଗେ କରିଗଲେ । ମାଲ୍ୟବନ୍ତରେ ସେ ରହିଲେ ।
ଏମନ୍ତେ କେତେ ଦିନ ଗଲା । ସୁଗ୍ରୀବର ଆସି ମିଳିଲା ॥
ବୋଇଲେ ଶ୍ରୀରାମ ଗୋସାଇଁ । ସୁଗ୍ରୀବରର ମୁଖ ଚାହିଁ ।
ଭୋ ମିତ୍ର ଶୁଣ ମୋର ବାଣୀ । ସୀତା ଯେ ମୋର ପ୍ରାଣମଣି ॥

ରାବଣେଶ୍ୱର ତାକୁ ନେଲା । କାହୁଁପେ କାହୁଁ ସେ ଉଠିଲା ॥
ସେ କଥା ଜାଣିବା କେମନ୍ତେ । ଏକଥା କହ ମିତ୍ର ମୋତେ ॥
ଶୁଣି ସୁଗ୍ରୀବର ବୋଲଇ । ଭାବନା ନ କର ଗୋସାଇଁ ॥
କପିବୀରଙ୍କୁ ଅଣାଇଲା । ଚତୁର୍ଦ୍ଦିଗକୁ ପେଷିଦେଲା ॥
ଦକ୍ଷିଣେ ଯେଉଁ ବୀରେ ଗଲେ । ତାଙ୍କ ସଙ୍ଗତେ ହନୁ ଥିଲେ ॥
ସକଳ ହୋଇଲେ ମେଳଣି । ଦେଖି ଆନନ୍ଦ ରଘୁମଣି ॥
ଆକାଶମାର୍ଗେ ଚଳି ଯାନ୍ତେ । ଧୂଳି ଉଡ଼ିଲା ଅପ୍ରମିତେ ॥
ଶୁଣ ସୁଜନେ ସାଧୁ ଧୀର । ମୁଁ ଛାର ମନୁଷ୍ୟ ମାତର ॥
ଯୁଧିଷ୍ଠି ଆଗେ ମାରକଣ୍ଡ । କହନ୍ତି ଆରଣ୍ୟକ କାଣ୍ଡ ।
ଶ୍ରୀରାମ ଚରଣକୁ ଆଶ । କହଇ ଲକ୍ଷ୍ମୀଧର ଦାସ ॥



ଶୁଣ ସୁଜନେ ମନସ୍ଥିର । ରାମ ଚରିତ ସୁଧାକର ॥
କହନ୍ତି ମାରକଣ୍ଡ ଋଷି । ପଚାରୁଛନ୍ତି ପଣ୍ଡୁ ବଂଶି ॥
ହନୁମନ୍ତ ଯେ ଲଙ୍କା ଗଲା । କେମନ୍ତେ ସୀତା ଠାବ କଲା ॥
ସେ କଥା କହ ମୁନିବର । ଶୁଣି ପାତକ ଯାଉ ଦୂର ॥
ଶୁଣ ରାଜନ ଧର୍ମସୁତ । ଶ୍ରୀରାମ ଚରିତ ଅମୃତ ॥
ଶ୍ରୀରାମ ଆଜ୍ଞା ପାଇଁ ବୀରେ । ମିଳିଲେ ଚତୁର୍ଦ୍ଦଶପୁରେ ॥
ସୀତାର ନ ପାଇ ସନ୍ଦେଶ । ବହୁତ ମନରେ ତରସ ॥
ଦକ୍ଷିଣ ମହୋଦଧି ତଟରେ । ଆସି ମିଳିଲେ ଅଷ୍ଟବୀରେ ॥
ସୁଷେଣ ବୋଲେ ହନୁ ଶୁଣ । ତୁ ବୀର ପାରିବୁ କି ଯାଇ ॥
ଶ୍ରୀରାମ ଆଜ୍ଞାରେ ମୁଁ ଯିବି । ସୀତାର ସନ୍ଦେଶ ଆଣିବି ॥
ଆସିବା ଯାଏ ତୁମ୍ଭେମାନେ । ବସି ଯେ ଥାଅ ଏହିସ୍ଥାନେ ॥
ଶ୍ରୀରାମ ମନେ ସୁମରଣ । ହନୁ ଯେ ଗଲା ବିକ୍ରମେଣ ॥
ଶତେ ଯୋଜନ ଲଙ୍କାସ୍ଥଳୀ । ଦେଖିଣ ହନୁ ମହାବଳୀ ।
ଦେଖିଲା ରତ୍ନମୟ ପୁର । ସ୍ୱର୍ଗହୁଁ ନୁହେ ପଟାନ୍ତର ॥
ସିଂହମଣ୍ଡପ ଯେ ଅଟ୍ଟାଳି । ଶୋଭାକରି ଚଉକତି ମିଳି ।

କପଟ ରୂପେକ ଧଇଲା । ରାବଣ ନଗରେ ପଶିଲା ॥
ଦେଖିଲା ମନ୍ଦୋଦରୀ ରାଣୀ । ମନେ ବଚ୍ଚରେ ଭପିମଣି ॥
ନିଶ୍ଚେ ସୀତାୟା ଅଟେ ଏହୁ । ରାବଣ ସନ୍ଧ ଧେ ଅଛଇ ॥
ଏନାଶୀ ନିଶ୍ଚେ ନାଶଗଲା । ରାମଙ୍କ ଅପେକ୍ଷା ଘଞ୍ଚିଲା ॥
ପୁଣି ମନରେ ବିଚାରଇ । ଲକ୍ଷ୍ମୀ ଯେ ଜନକତନୟୀ ।
ଦୈତ୍ୟକୁ କେହ୍ନେ ଦେବଦ୍ଦେବ । ଏ ଯେ ଅଟଇ ଅସମ୍ଭବ ॥
ସୀତ ସତ ଏହୁ ନୁହନ୍ତୁ । ପାପ ମୁଁ ଭଜ ମନ୍ଦମତି ॥
-ସେଠାରୁ ବେଗେ ଚଳିଗଲା । ଦକ୍ଷିଣ ମନ୍ଦିରେ ଖୋଜିଲା ॥
ଶତେ ଯୋଜନ ଲଙ୍କାପୁର । ଖୋଜଇ ପବନ କୁମର ॥
ଅଶୋକ ବନ ତୋଟାପୁର । ତହିଁ ପ୍ରବେଶ ହନୁବୀର ॥
ଅଶୋକ ବୃକ୍ଷମୂଳେ ବସି । ଅଛନ୍ତି ସୀତା ଶୁଭ୍ରକେଶୀ ॥
ଚଉପାଶରେ ଅସୁରୁଣୀ । ସୀତାଙ୍କୁ ବେଢ଼ିଛନ୍ତି ପୁଣି ॥
ସପ୍ତ ଅସୁରୀ ସଙ୍ଗେ ଦେଇ । ରାବଣ ଅଛଇ ଜଗାଇ ॥
କ୍ଷୁଦ୍ର ବରୁପ ସେ ଧଇଲା । ଶ୍ରୀରାମ ନାମ ଉଚାରିଲା ॥
ସେ ବାଣି ଶୁଣି ମହାସତୀ । ଚକିତ ହୋଇଲେ ତଡ଼ତି ॥
ଶ୍ରୀରାମ ନାମ ଜେ କହିଲା । ଜେ ସୁଧା ସିନ୍ଧୁ ବରଷିଲା ॥
ହନୁ ଯେ ବୃକ୍ଷେ ବସିଥିଲା । ସୀତାଙ୍କ ଛାମୁରେ ମିଳିଲା ॥
ପାଦେ ପଡ଼ିଲା ତତକ୍ଷଣ । ପ୍ରଣାମ କଲା ପୁଣ ପୁଣ ॥
ବୋଲନ୍ତି ଜନକ ଦୁହିତ । କେଁ ତୁମ୍ଭେ କାହାର ଯେ ସୁତ ॥
କିପାଁ ଅଇଲ ଏ ସ୍ଥାନକୁ । ସନ୍ଦେଶ କହ ଯେ ଅମ୍ଭଙ୍କୁ ॥
ଅଯୋଧ୍ୟାଦେଶେ ନୃପନାଥ । ନାମ ତାଙ୍କର ଦଶରଥ ॥
ଶ୍ରୀରାମେ ନାମେ ତାଙ୍କ ସୁତ । କନଷ୍ଠ ଲକ୍ଷ୍ମଣ ଭ୍ରାତ ॥
ସାବତ ଜନନୀ କେକେୟୀ । ରାମଙ୍କୁ କଲେ ବଡ଼ ମାୟୀ ॥
ରାଜାଙ୍କୁ ସତ୍ୟ କରାଇଲେ । ରାମ ବନ ଯାଉ ବୋଇଲା ॥
ଚଉଦବର୍ଷ ପର୍ଯ୍ୟନ୍ତେ । ବୁଲିବେ ଯେବେ ବନସ୍ତେ ॥
ସୀତା ଶ୍ରୀରାମ ଲକ୍ଷ୍ମଣ । ବାହାର ହେଲେ ତିନିଜଣ ।

କିଛି ଦିନ ବନେ ସେ ଥିଲେ । ଦଣ୍ଡକା ଅରଣ୍ୟେ ରହିଲେ ॥
ଶ୍ରୀରାମ ଗଲେ ମୃଗ ମାରି । ସୀତା ରାବଣ ନେଲା ହରି ॥
ମୁହିଁ ତାହାଙ୍କ ନିଜ ଭୃତ୍ୟ । ନାମ ମୋହର ହନୁମନ୍ତ ।
ତୁମ୍ଭଙ୍କୁ ଖୋଜିବା ନିମନ୍ତେ । ଶ୍ରୀ ମୁଖେ ଆଜ୍ଞା ଦେଲେ ମୋତେ
ସପତ ସମୁଦ୍ର ଡେଇଁଲି । ତୁମ୍ଭଙ୍କୁ ଏଥି ଠାବ କଲି ॥
ହନୁ ମୁହିଁ ସୀତା ବୋଲନ୍ତି । ରାମ ତୋତେ କି କହିଛନ୍ତି ॥
ତାଙ୍କ ସଙ୍କେତ ତୁହି ଦେଲେ । ମନରେ ପ୍ରତେ ଯିବ ଭଲେ ॥
ତକ୍ଷଣେ ମୁଦ୍ରିକା କାଢ଼ିଲା । ଜାନକୀ ହସ୍ତେ ନେଇ ଦେଲା ॥
ଜାନକୀ ମୁଦ୍ରିକାକୁ ନେଲେ । ରାମର ବୋଲିଣ ଚିହ୍ନିଲେ ॥
ନିଶ୍ଚୟ ଶ୍ରୀରାମଙ୍କ ଦୂତ । ଏ ତାଙ୍କ ବିଶ୍ୱାସୀ ଭକତ ॥
ଏ ଯେ ବିଶ୍ୱାସ ରାମ ତହିଁ । ଶ୍ରୀହସ୍ତ ମୁଦି ଇଛନ୍ତି ଦେଇ ॥
ବୋଲନ୍ତି ଜନକ ଦୁହିତ । ଶୁଣରେ ବୀର ହନୁମନ୍ତ ।
ଶ୍ରୀରାମ ଆଗେ କହ ଯାଇଁ । ରାବଣ ଆଣିଲା ଚୋରାଇ ॥
ମୋ ପ୍ରଭୁ ଏଥିକୁ ଆସିବେ । ରାବଣ ମାରି ମୋତେ ନେବେ
ତାହାଙ୍କ ବିନୁ ଅନ୍ୟ ଆଣ । ନାହିଁରେ ପବନର ଶିଷ ॥
ଏବେ ଏଠାରୁ ଚଳିଯାଅ । ରାମଙ୍କୁ ମୋ ବାର୍ତ୍ତା ଜଣାଅ ॥
ତୋହର ଆସିବା ରାବଣ । ଜାଣିଲେ ଦେବ ସେ ଦୂଷଣ ॥
ମେଲାଣି ହୋଇ ହନୁମାନ । ପ୍ରବେଶ ହେଲା ମଧୁବନ ॥
ପାଚିଲା ଫଳମାନ ଖାଇ । ଗଛ ଉପାଡ଼ି ଖୁସି ହୋଇ ।
ତୋଟା ରକ୍ଷକ ଯେ ଅଇଲା । ହନୁ ତାହାର ପ୍ରାଣ ନେଲା ॥
ଅକ୍ଷୟ ଜମ୍ବୁମାଳି ମାରି । ଫଳ ଖାଇଲା ପେଟ ପୁରି ॥
ବସିଛି କପି କୁଳମଣି । ଇନ୍ଦ୍ରଜିତ ଭେଟିଲା ପୁଣି ॥
ନାଗପାଶ ବନ୍ଧନ ଦେଇ । ହନୁକୁ ଧରି ନେଲେ ଯାଇଁ ॥
ଲଙ୍କପତି ଛାମୁକୁ ନେଲା । ବହୁତ ଦଣ୍ଡ ତାକୁ ଦେଲା ॥
ଏମନ୍ତ କହିବଣି ଭେଟେତ । ହନୁକୁ ଦଣ୍ଡ ଦେଲା ଯେତେ ॥
ଲାଙ୍ଗୁଳେ ବସନ ଗୁଡ଼ାଇଲା । ଅଗ୍ନି ଲଗାଇ ଛାଡ଼ି ଦେଲା ॥

ରାବଣ ଜଗତରେ ବସି    ଲଙ୍କା ଦହିଲା ବାଛଶିଶି ॥
ପୋଡ଼ିଣ କଲା ଛାର ଖାର । ଲକ୍ଷେ ଯୋଜନ ଲଙ୍କାପୁର ॥
ସମୁଦ୍ର ପାରି ସେ ହୋଇଲା । ସପ୍ତ ବୀରଙ୍କ ପାଶେ ଗଲା ।
ହନୁ ବୋଇଲା ଯିବା ଆସ । ସୀତାର ଆଣିଲି ସନ୍ଦେଶ ॥
ଆସ ହେ ବେଗେ ଏଥୁଁ ଯିବା । ଶ୍ରୀରାମ ଛାମୁରେ କହିବା ॥
ଅଷ୍ଟ ଯେ ବୀରେ ଚଳିଗଲେ । ମାଲ୍ୟବନ୍ତରେ ସେ ମିଳିଲେ ।
ରାମ ବସିଣଛନ୍ତି ତହିଁ । ହନୁ ପ୍ରବେଶ ହେଲା ଯାଇଁ
ଚରଣେ ପ୍ରଣମିତ ହୋଇ । ଶିରରେ ବେନି କର ଦେଇ ॥
ଶ୍ରୀରାମ ବୋଇଲେରେ ସୁତ । ଦେଖିଲୁ ଜନକ ଦୁହିତ ।
ହନୂ କହିଲେ କର ଯୋଡ଼ି । ଶୁଣ କୋଦଣ୍ଡ ଚାପଧାରୀ ।
ତୁମ୍ଭ ଆଜ୍ଞାରେ ଲଙ୍କା ଗଲି । ଛଦ୍ମ ବକନ୍ଧରେ ଖୋଜିଲି ।
ଅଶୋକବନ ତୋଟାପୁରୀ । ଅଛନ୍ତି ଜନକ କୁମାରୀ ।
ସପ୍ତ ଅସୁରୀ ସଙ୍ଗେ ହୋଇ । ରାବଣ ଅଛଇ ଜଗାଇ ।
ଦେଖିଲେ ଅସୁରୁଣୀ ମୋତେ । କହିଲେ ରାବଣ ଅଗ୍ରତେ ॥
ଇନ୍ଦ୍ରଜିତକୁ ଆଜ୍ଞା ଦେଲା । ସେ ମୋତେ ଧରି ଘେନିଗଲା ।
ନାଗପାଶେ ବନ୍ଧନ ଦେଇ । ଅନେକ ମାଡ଼ ସେ ମାରଇ ।
ଯେତେ ସେ ଦଣ୍ଡ ଦେଲା ମୋତେ । କେ ପ୍ରଭୁ କହିବ ମୁଁ କେତେ ॥
ଲାଙ୍ଗୁଳେ ମୋର ବସ୍ତ୍ର ଭିଡ଼ି । ଅଗ୍ନି ଲଗାଇ ଦେଲା ଛାଡ଼ି ।
ତୁମ୍ଭ ନାମ ସ୍ମରଣ ମାତ୍ରେ । ତୁରିତ ନ ରହିଲା ଗାତ୍ରେ ।
ତହୁଁ ମୁଁ ବାହାରିଣ ଗଲି । ଲଙ୍କା ଭୁବନ ପୋଡ଼ିଦେଲି ।
ଅକ୍ଷୟ ଜମ୍ବୁମାଲି ମାରି । ତିନିଲକ୍ଷ ଯୋଦ୍ଧା ସଂହାରି ।
ତୁମ୍ଭ ଚରଣ ପରସାଦେ । ଦୁର୍ଗତି ତରି ଅପ୍ରମାଦେ ।
ସନ୍ତକ ଦେଇ ମଥାମଣି । କହିଲେ ଜନକ ଦୁଲଣୀ ।
ରାବଣ ମାରି ମତେ ନେବେ । ଚଉଠେ ସ୍ୱଦୟା କହିବେ ।
ଶୁଣି ଶ୍ରୀରାମ ତୋଷ ହେଲେ । ଧନ୍ୟ ହନୁମାନ ବୋଇଲେ ॥
ଶ୍ରୀରାମ ଚଳେ ବାନ୍ଧବନ୍ତ । ପାପୀ ରାବଣ ନ ଜୁମନ୍ତ ।

ହୃଦକୁ ମାରଅଛୁ ପୁଣି । କେମନ୍ତେ ସହିବ ଧରଣୀ ॥
ଚଣ୍ଡାଳ ଅଟେ କଲୁ ମନ୍ଦ । ନଷ୍ଟେ ହୋଇବ ଦଶକନ୍ଧ ॥
ଧରଣୀ ଛଳେ ମୋର ଦେହି । ଦୁଷ୍ଟକୁ ନିବାରିବ ମୁହିଁ ॥
ଶୁଣ ସୁଜନେ ମନ ତୋଷେ । ଶ୍ରୀରାମ ଚରିତ ବିଶେଷେ ॥
ରାମ ଲକ୍ଷ୍ମଣ ପଦ୍ମପାଦେ । ରହୁ ମୋ ମନ ଅପ୍ରମାଦେ ॥
ମୋହର ନ ଦେଖିବ ଦୋଷ । କହଇ ଲକ୍ଷ୍ମୀଧର ଦାସ ॥

— ※ —

ଶୁଣ ସୁଜନେ ଚିତ୍ତ ଦେଇ । ମାର୍କଣ୍ଡ ଯୁଧିଷ୍ଠିରଙ୍କି କହି ॥
କହନ୍ତି ଗ୍ରନ୍ଥ ରାମାୟଣ । ଶ୍ରୀ ରଘୁନାଥଙ୍କ ପୁରାଣ ॥
ଶ୍ରୀରାମ ସେତୁ ପାରି ହୋଇ । ରହିଲେ ସୁବଳୟା ଯାଇଁ ॥
ପ୍ରଭାତୁ ଉଠି ବିଭୀଷଣ । ଛାମୁରେ କଲା ଦରଶନ ॥
ତା ପଛେ ରାଜା ସୁଗ୍ରୀବର । ଆବର ବାଳୀର କୁମର ।
ଗନ୍ଧମାଦନ ପନଶୀଳ । ସଞ୍ଜୟ ତୁଲେ ନଳ ନୀଳ ॥
ସୁଷେଣ ଅଙ୍ଗଦ ହନୁମନ୍ତ । ଜାମ୍ବବ ଆଦି ଏମନ୍ତ ॥
ଏମନ୍ତ କହିବଇଁ କେତେ । ପଚାଶ ଯୁଥପତି ଯେତେ ॥
ଛାମୁରେ କଲେ ଦରଶନ । ଦନ୍ତଧାବନେ ବସନ୍ତେ ରାମ ॥
ଏମନ୍ତ ବେଳେ ଲଙ୍କାପୁରେ । ବାଦ୍ୟ ଶୁଭିଲା ଚମତ୍କାରେ ॥
ଲଙ୍କାକୁ ସୁବଳାଦ୍ରି ଦେଶ । ଛଡା ଅଟେ ପଞ୍ଚାଶ କ୍ରୋଶ ॥
ଏତେ ଦୂରକୁ ଯେ ଶୁଭିଲା । ସୁବଳ ଗିରି କମ୍ପିଗଲା ॥
ଆଶ୍ଚର୍ଯ୍ୟ ହୋଇଲେ ରଘୁନନ୍ଦନ । କହନ୍ତି ରାଜା ବିଭୀଷଣ ॥
ଶୁଣହେ ରାଜା ବିଭୀଷଣ । ଲଙ୍କାରେ ଶୁଭେ କି ଘୋଷଣ ॥
ଏମନ୍ତ ବିଚାରଇଁ ମୁହିଁ । ଏ ବାଦ୍ୟ ବାଜେ କାହିଁ ପାଇଁ ॥
କି ଅବା ଜାନକୀଙ୍କ ମୋର । ଯାଚି କି ଦେବ ଲଙ୍କେଶ୍ୱର ॥
ମୋର ଆସିବା ଯେ ଶୁଣିଲା । ଡରେ ବା ଦେବ ବିଚାରିଲା ।
ମୋସଙ୍ଗେ କରିବ ପ୍ରୀତି । ଦେବ ବା ଜନକଦୁହିତୀ ॥
ଏମନ୍ତ ଶୁଣି ବିଭୀଷଣ । ନମିଲା ଶ୍ରୀରାମ ଚରଣ ॥

ଖଣ୍ଡେ ଦୂରକୁ ଘୁଞ୍ଚି ଗଲ । କର ଯୋଡ଼ିଣ ଜଣାଇଲ ॥
ଦେଖ ଦେବ ବ୍ରହ୍ମାଣ୍ଡ ଠାକୁର । ରାବଣ ବୋଲି ନାମ ଯାର ॥
ଯାହାର ପୁଷ୍ପକ ବିମାନ । ଇନ୍ଦ୍ରଜିତ ଯାହା ନନ୍ଦନ ॥
କୁମ୍ଭକର୍ଣ୍ଣ ଯାର ସୋଦର । ରୁଧିର କରଇ ଆହାର ॥
ଚଉଦ କୁଳାନ୍ତକ କେତୁ । ପ୍ରାଣିଙ୍କି ହୁଏ ଅପମୃତ୍ୟୁ ॥
ଅଠଶ କ୍ରୋଶ ଲଙ୍କାପୁର । ଶୁଦ୍ଧ ସୁବର୍ଣ୍ଣ ହୀରା ଗୃହ ॥
ମଧ୍ୟରେ ରାବଣର ପୃଷ୍ଟ । ଶୋଭାପାଉଛି ସାର ସାର ॥
ପଞ୍ଚାଶ ଦାଣ୍ଡେ ଯେ ଲଙ୍କାର । ସହସ୍ର ହାଟ ଯେ ଛହୁଁର ॥
ପଞ୍ଚାଶ ପଦ୍ମ ଯାର ରଥୀ । ଅଶୀ ପଦ୍ମ ଯେ ମତ୍ତହସ୍ତୀ ॥
ନବ ପଦ୍ମ ଯାର ଅସୁର । ସତୁରି ପଦ୍ମ ଘୋଡ଼ାସ୍ୱାର ॥
ନବକୋଟି ବାଜଇ ଭେରୀ । ଅଶୀକୋଟି ବାଜଇ ତୁରୀ ॥
ନବକୋଟି ବାଜଇ ଶଙ୍ଖ । ସତୁରି ବୃନ୍ଦ ଯା ଢମକ ॥
ଅଠର ଖୋଣି ବାଦ୍ୟକାର । ନିତ୍ୟ ବାଜଇ ସିଂହଦ୍ୱାର ।
ସୁରଙ୍ଗିର ନାମେ ଢମକ । ବାଜନ୍ତେ କମ୍ପେ ସପ୍ତଦ୍ୱୀପ ।
ରାଜାର ପୁରେ ରାଣୀହଂସ । ଛତିଶକୋଟି ଲକ୍ଷ ପଞ୍ଚାଶ ।
ଛହୁଁରେ ରାଣୀ ମନ୍ଦୋଦରୀ । ମୟ ଦଇତ୍ୟର କୁମାରୀ ।
ଯାହାର ଦ୍ୱାରେ ନିତ୍ୟ ନିତ୍ୟ । ବ୍ରହ୍ମା ଗୃହ ବେଦ ପଢ଼ନ୍ତି ।
ଇନ୍ଦ୍ର ଯା ଦ୍ୱାରପାଳ ହୋଇ । କୁବେର ଭଣ୍ଡାର ରଖଇ ।
ବରୁଣ ଛତ୍ର ଧରିଥାଇ । ପବନ ଆଲଟ ଧରଇ ।
ଆଦିତ୍ୟ ଭୃଙ୍ଗାରି ଦ୍ୟନ୍ତି ପାନ । ଚନ୍ଦ୍ର ରାନ୍ଧନ୍ତି ଗୃହ ଅନ୍ନ ॥
ଅଗ୍ନି ତା ବସନ କାଚନ୍ତି । ଯମ ବୈଦ୍ୟପଣ କରନ୍ତି ।
ବୃହସ୍ପତି ପାଞ୍ଜି କହନ୍ତି । ଈଶ୍ୱର ସଭାରେ ନାଚନ୍ତି ।
ବାସୁକି ପାତାଳରୁ ଆସି । ରହେ ଲଙ୍କାରେ ଦଣ୍ଡୁଆସି ।
ଏମନ୍ତ ମହିମା ଯାହାର । ତୋତେ କି ଡରେ ଲଙ୍କେଶ୍ୱର ।
ଏମନ୍ତ ବିଭୀଷଣ ବାଣୀ । ଶୁଣି ବିଷାଦ ରଘୁମଣି ।
କପୋଳେ ହସ୍ତ ପକାଇଲେ । ଲକ୍ଷ୍ମଣ ମୁଖକୁ ଚାହିଁଲେ ।

ଶ୍ରୀରାମ ବୋଲନ୍ତି ହେ ଭାଇ । ଆଜ୍ଞ ତ ଜାନକୀ ନ ପାଇ ॥
ପଦ୍ମ ପଦ୍ମ ରଥୀ ଯାହାର । ଭଲ୍ଲୁକ କପି ସେ ମୋହର ।
ଏକାହିଁ ଜାଣିବେ ସମର । ଯୁଝିବେ ଦୈତ୍ୟଙ୍କ ସଙ୍ଗର ।
ବନର ଫଳମୂଳ ଖାନ୍ତି । କାଣ୍ଡ ଖଣ୍ଡା ଯେ ନ ଜାଣନ୍ତି ।
ମୁଁ ଯେବେ ଏହା ଜାଣିଥାନ୍ତି । ସମୁଦ୍ର ପାରି ନ ଆସନ୍ତି ।
ରାଜ୍ୟେ ଶୁଭିଲା ଯଶ ମୋତେ । ଲଙ୍କାକୁ ବଳେ ରଘୁନାଥେ ॥
ଏବେ ବାହୁଡ଼ି ଯେବେ ଯିବି । ଲୋକେ ପୁଚ୍ଛିଲେ କି କହିବି ॥
ବୋଲିବେ ଶ୍ରୀରାମ ନ ଗଲେ । ବାଟରୁ ବାହୁଡ଼ି ଆଇଲେ ।
ଏମନ୍ତ ବୋଲିବେ ଯେ ମୋତେ । ଉପହାସିବେ ରାଜପୁତ୍ରେ ॥
ମୋ ବଂଶ ଅଟେ କାର୍ତ୍ତିକର । ସେ ବଂଶେ ହେଲି ମୁଁ ଅଙ୍ଗାର
ମୋ ବଂଶେ ରାଜା ଯେ ସଗର । ଯଶ ରଖିଲେ ମେଦାମାର ।
ମୋ ବଂଶେ ଭଗୀରଥ ଥିଲେ । ପୃଥ୍ୱୀକୁ ଗଙ୍ଗାକୁ ଆଣିଲେ ।
ପିତୃଲୋକଙ୍କୁ ଉଦ୍ଧାରିଲେ । ସଂସାରେ ଯଶ ରଖିଗଲେ ।
ମୋ ବଂଶେ ହରିଶ୍ଚନ୍ଦ୍ର ଥିଲେ । ପୃଥିବୀ ବ୍ରାହ୍ମଣେ ଦେଲେ ।
ଝିଅ ଭାରିଯାକୁ ବିକିଲେ । ଚଣ୍ଡାଳ ଘରଣେ ସେବିଲେ ।
ମୋ ବଂଶେ ରାଜା ମାନଧାତା । ଇନ୍ଦ୍ର ଯାହାର ଧର୍ମ ପିତା ।
ମୋହର ପିତା ଦଶରଥ । ଶନୈଶ୍ଚରଙ୍କ ସଙ୍ଗେ ମିତ ।
ଯୁଦ୍ଧରେ ଶନୈଶ୍ଚର ଜିଣି । ତୋଷ କରାଇ ତାଙ୍କୁ ଆଣି ॥
ବୋଲନ୍ତେ ଦଶରଥ ଶୁଣି । ତୋର ରାଶିରେ ପୀଡ଼ା ନାହିଁ
ସେ ଭୁଲେ ହେଲି ମୁହିଁ ଜନ୍ମ । ବଅର୍ଥେ ଗଲା ମୋର ଦିନ ॥
ଏବେ ହୋଇଲି ରାଜ୍ୟଭ୍ରଷ୍ଟ । ଦ୍ୱିତୀୟେ ମଲେ ଦଶରଥ ।
ତୃତୀୟେ ଅନ୍ନ ନ ମିଳିଲା । ଚତୁର୍ଥେ ନାରୀ ଚୋର ନେଲା
ପଞ୍ଚମେ ବୃକ୍ଷମୂଳେ ଘର । ବଞ୍ଚିଲି ସେ ବରଷା କାଳ ॥
ପଲଙ୍କ ଶଯ୍ୟା ପାଶୋରିଲି । ପତ୍ର ଶଯ୍ୟାରେ ଦିନ ନେଲି ॥
କର୍ପୂର ଚନ୍ଦନ ତେଜିଲି । ରଙ୍ଗମାଟିରେ ଦିନ ନେଲି ॥
କୁଙ୍କୁମ ଗନ୍ଧ ଶିରେ ନାହିଁ । ଜଟାକୁ ଗନ୍ଧ କଲି ନେଇ ॥

ପିନ୍ଧିଲି ବୃକ୍ଷର ବଳକଳ । ବନେ ଭକ୍ଷିଲି କନ୍ଦମୂଳ ॥
ବାସ ମୁଁ କଲି ନୀପକୂଳେ । ଏ କ୍ଲେଶ ଥିଲା ମୋ କପାଳେ
ଏ କଷ୍ଟ ମୋତେ ନ ବାଧନ୍ତା । ଯେବେ ମୋ ସଙ୍ଗେ ସୀତା ଥାନ୍ତା
ମାଗୋ କୈକେୟୀ ଏହା କଲୁ । ସେବକ କରି ନ ରଖିଲୁ ॥
ଅହା ମୋ ଜନକ ଦୁହିତା । ଦେଇଣ ଗଲୁ ଏତେ ଚିନ୍ତା ।
ଜନକରାଜାର କୁମାରୀ । ମୋତେ ଦେ ସେବକ ତୋପର
ମଧୁଶଯ୍ୟାରେ ପାଦ ଦେଇ । ଶପଥ କରାଇଲୁ ତୁହି ॥
ମୋ ବିନ ଅନ୍ୟ ନାରୀ ସଙ୍ଗ । କେବେହେଁ ରାମ ନ କରିବ ॥
ତୋ ବାକ୍ୟ ପ୍ରୀତି ମୁଁ ହୋଇଲି । ପ୍ରତାପ ଛୁଇଁ ସତ୍ୟ କଲି ॥
ଏତେକ ମୁଁ ଆଶ କରିଥିଲୁ । ଏବା କାହିଁ ତୁ ଛାଡ଼ି ଗଲୁ ॥
ଅହା ମୋ ଜନକ କୁମାରୀ । ତୋ ବିନୁ ହେଲି ଏତେ ପର
ଛାଡ଼ିଣ ଗଲୁ ମୋତେ ଛାଡ଼ି । ତୋ ବିନୁ ପଥ ଦିଶୁ ନାହିଁ ॥
ଦିନେକ ରଜନୀର କାଳେ । ଶୋଇ ଯେ ଥିଲୁ ମୋର କୋଳେ
ନିଦ୍ରାରେ ଜାଣି ନ ପାରିଲି । ପିଠି ଦେଇଣ ମୁଁ ଶୋଇଲି
ତହୁଁ କି କ୍ରନ୍ଦନ ସୀତା । ମୋତେ ଯେ ନ କହିଲୁ କଥା ।
ତେତେ ସ୍ନେହରେ ଅଭିମାନ । ଫେଡ଼ିଲୁ ଚନ୍ଦ୍ରମାବଦନ ।
ଏବେ କ ପୂରିଲା ବରଷେ । ସତୀ ରହିଲୁ କାହା ପାଶେ ॥
ମୋ ଘର ହୀନ ଏ ଜୀବନ । ନ ଯାଇ ଅଛି କେତେ ଦିନ ॥
ଶ୍ରୀମୁଖ ନ ଦେଖି ତୋହର । ମୋତେ ଦିଶୁଛି ଅନ୍ଧକାର ।
ଥିବେ ଲକ୍ଷ୍ମଣ ଭାଇ ମୋର । ଚଳନ୍ତୁ ଅଯୋଧ୍ୟା ନଗର ।
କହିବୁ ଭରତ ଅଗର । ଶ୍ରୀରାମ ଗଲେ ଦେଶାନ୍ତର ।
ସୀତା ରାବଣ ନେଲା ହରି । ରାମ ଯେ ନ ଆସିବେ ଫେରି ॥
ଏ କଥା ଭରତ ଶୁଣିବ । ତକ୍ଷଣେ ଜୀବନ ତେଜିବ ।
ଶୁଣିଣ ମୋର ଦୁଃଖକର୍ମ । ମାତାଏ ତେଜିବେ ଜୀବନ ।
ପ୍ରଜାଏ ଅନାଥ ହୋଇବେ । ଅଯୋଧ୍ୟା ଛାଡ଼ି ପଳାଇବେ ।
ବୁଡ଼ିଲା ସୂର୍ଯ୍ୟବଂଶ ମୋର । ପାଷାଣେ କଚାଡ଼ିବ ଶିର ।

ଲକ୍ଷ୍ମଣ ନର୍ଘ ଚେଡ ପଡ଼ିଲା । ହନୁ ଯେ ବୋବାଳି ଛାଡ଼ିଲା ।
ସୁଗ୍ରୀ ଅଙ୍ଗଦ ଯେତେ ଥିଲେ । ହାରାମ ବୋଲିଣ ପଡ଼ିଲେ ॥
ଏମନ୍ତ ଦେଖି ହନୁମନ୍ତ । ଉଠି ଯୋଡ଼ିଲା ବେନିହସ୍ତ ॥
ହେ ଦେବ ବ୍ରହ୍ମାଣ୍ଡଠାକୁର । କାହା ଛାରକୁ ଏତେ ଡର ।
ସପତଦ୍ୱୀପ ବସୁମତୀ । ଅଚଳ ଅଉ ଉମପତି ॥
ଅଛନ୍ତି ଗର୍ଭରେ ଯାହାର । ଏଥୁଁକି ସୀତାସ୍ତ୍ରୀ ଅନ୍ତର ॥
ଇତର ଜନପ୍ରାୟ ହୋଇ । ଶୋକ କରୁଛ କାହିଁ ପାଇଁ ॥
ତୁ ଏବେ ମୋତେ ଆଜ୍ଞା କର । ଭାଙ୍ଗିବି ଏ ଲଙ୍କା ନଗର ॥
ଅଠଶ କ୍ରୋଶ ଲଙ୍କାପୁର । ଉପାଡ଼ି ବାନ୍ଧିବି ଲାଞ୍ଜର ।
ଏମନ୍ତ ଆଜ୍ଞା ତୁ ନ କର । ଅଳପ ଲୋକ ପ୍ରାୟ ଝୁର ॥
ଏମନ୍ତ ହନୁବାକ୍ୟ ଶୁଣି । ଶୋକ ଛାଡ଼ିଲେ ରଘୁମଣି ॥
ହନୁ ମସ୍ତକେ ହସ୍ତ ଦେଲେ । ସାଧୁ ସାଧୁ ବୋଲି ବୋଇଲେ ॥
ସାଧୁରେ ସାଧୁ ହନୁମନ୍ତ । ସାଧୁରେ ପବନର ସୁତ ॥
ପାରୁ ନ ପାରୁ ଯେଉଁଜନ । ବିପଦ କାଳେ ଏବଚନ ।
ଧଇର୍ଯ୍ୟ ଦେଇ ଯେ କହଇ । ତାର ସମାନ ବନ୍ଧୁ ନାହିଁ ।
ବନ୍ଧୁ ଯେ ପବନ କୁମର । ସଖା ଯେ ଭଲ୍ଲୁକ ମୋହର ॥
ଅହା ମଇବ ସୁଗ୍ରୀବର । କଥାଏ ପଡ଼ିଲା ମନର ।
କାଳେ ବା ଦୈତ୍ୟ ନ ଜାଣିଲା । ମେଘନାଦ ଶ୍ରେହବଳ ନେଲା ।
କାଳେ ସେ ବୋଲିବ ଅସୁର । କେ ମାଗି ଅଇଲା ତୁମ୍ଭର ॥
ଲଙ୍କାକୁ ବରଗିବା ଚୂର । ବୁଝିବା ଦେବା ନ ଦେବାର ॥
ଯେବେ ଜାନକୀ ଦେବ ମୋତେ । ମୁଁ ପ୍ରୀତି ହେବି ତା ସଙ୍ଗତେ ॥
ନୋହିଲେ ଛେଦିବି ତା ଶିର । ରଖନ୍ତା ନାହିଁ ଜନପୁର ॥
ଏ କଥା ଯେବେ ନ କରଇ । ତେବେ କୋଦଣ୍ଡ ନ ଧରଇ ।
ମୋତେ ମୋ ଲକ୍ଷ୍ମଣ ରଣ । ଛୁଇଁ କହୁଛି ଧନୁ ତୂଣ ॥
ଶ୍ରୀରାମ ଚରଣକୁ ଅର୍ଶ । ଶରଣ ଲକ୍ଷ୍ମୀଧର ଦାସ ॥

ଅଦ୍ୟରେ ଶ୍ରୀ ଶ୍ରୀରାମ ବାଣୀ । ଅଯୋଧ୍ୟା ଦେଶ ନୃପମଣି ॥
ସୂର୍ଯ୍ୟବଂଶରେ ଅବତାର । ଦଶରଥ ରାଜା କୁମର ।
କୌଶଲ୍ୟା ଗର୍ଭେ ଉତପତ୍ତି । ନାମ ମୋହର ଦାଶରଥି ।
ମୁହିଁ ଟି ଦେବ ଚକ୍ରଧର । ବୈକୁଣ୍ଠ ପୁରେ ମୋର ଘର ॥
ମୁହିଁ ଟି ବ୍ରହ୍ମାଙ୍କୁ ସର୍ଜିଲି । ବ୍ରହ୍ମାଙ୍କୁ ବ୍ରହ୍ମପଦ ଦେଲି ॥
ମୁହିଁ ଟି ସ୍ୱର୍ଗେ ଇନ୍ଦ୍ର କଲି । ସକଳ ଦେବ ଭୁଅଇଲି ॥
ମୁହିଁ ଟି କଲି ଦିକ୍ ପାଳ । ମୁହିଁଟି କଲି ଦ୍ୱୀପ ପାଳ ॥
ମୁହିଁ ଟି ଦେବତା ବ୍ରାହ୍ମଣ । ମୁହିଁ ରାକ୍ଷସ ଦେବଗଣ ।
ଦେବଙ୍କ ଛଳେ ମର୍ତ୍ତେ ଜାତ । ନାମ ମୋହର ରଘୁନାଥ ।
ଭୂମିଙ୍କ ଭାର ହରିବା ଅର୍ଥେ । ମୋ ଅବତାର ଏ ଜଗତେ ।
ବିଶ୍ୱାମିତ୍ରଙ୍କ ସଙ୍ଗେ ଗଲି । ସିଦ୍ଧବନେ ଯାଗ ରଖିଲି ॥
ଗୌତମ ନାରୀ ଶିଳା ଥିଲେ । ମୋ ପାଦଲାଗି ନିସ୍ତରିଲେ ।
ତହୁଁ ମିଥିଲା ପୁର ଗଲି । ଶିବ ଶରାସନ ଭଙ୍ଗିଲି ।
ବିଭା ହୋଇଲି କମଳମା । ଜନକରାଜାର ଦୁଲଣୀ ।
ବାଟେ ପର୍ଶୁରାମ ଜିଣିଲି । ଅଯୋଧ୍ୟା ପୁରେ ଭେଟିଲି ॥
ସାବତ ଜନନୀ କୈକେୟୀ । ଆମ୍ଭଙ୍କୁ କଲେ ବଡ଼ ମାୟା ॥
ପିତାଙ୍କୁ ସତ୍ୟ କରାଇଲେ । ରାମ ବନ ଯାଉ ବୋଇଲେ ।
ଚଉଦ ବର୍ଷ ପର୍ଯ୍ୟନ୍ତେ । ବୁଲିବେ ଦଣ୍ଡକ ବନସ୍ତେ ।
ମୋ ପ୍ରିୟ [illegible] । ରାମ ବନକୁ ଚାଲିଯିବ ।
[illegible] । ଅନ୍ନ ନ ବଢ଼େବ ଆହାର ।
ପିତା [illegible] । [illegible] ନଧର ॥
ଆମ୍ଭ [illegible] । ଦଣ୍ଡକାରଣ୍ୟେ କଲୁଁ ବାସ ।
ସୂର୍ପଣଖା ନାମ [illegible] । [illegible] ମୋ ଭାଇ ଲକ୍ଷ୍ମଣ ।
[illegible] ଦୂଷଣ ବଧିଲି । [illegible] ସଙ୍ଗତେ ମାରିଲି ।
ଚଉଦ ସହସ୍ର ଜଣ ଥିଲେ । ଆମ୍ଭ ନାରାଚେ ସର୍ବେ ମଲେ ॥
ସେ ସୂର୍ପଣଖା ପଳାଇଲା । ଲଙ୍କାରେ ବାରତା କହିଲା ।

ସେ ବାକ୍ୟ ଶୁଣି ରେ ପାମର । ଅଇଲୁ ବନସ୍ତ ଭିତର ।
ମାୟା କୁରଙ୍ଗୀ ଦେଖାଇଲୁ । ସୀତାଙ୍କୁ ଚୋରିକରି ନେଲୁ ।
ଥୋଇଲୁ ଲଙ୍କାପୁରେ ନେଇ । ସହସ୍ରେ ଅସୁରୀ ଜଗାଇ ।
ମୃଗ ମାରିଣ ମୁହିଁ ଗଲି । ବାହୁଡ଼ି ସୀତା ନ ପାଇଲି ।
ବହୁତ କଲି ମୁଁ ରୋଦନ । ପ୍ରବୋଧ କଲେ ଲକ୍ଷ୍ମଣ ।
ଜଟାୟୁ କହିଲା ବାରତା । ଲଙ୍କା ରାବଣ ନେଲା ସୀତା ॥
ବହୁତ ବନସ୍ତେ ବୁଲିଲୁଁ । ବାଟେ ହନୁମନ୍ତ ଭେଟିଲୁଁ ।
ସେ ସବୁ କହିଲା ବୃତ୍ତାନ୍ତ । ସୁଗ୍ରୀ ସଙ୍ଗରେ ହେଲୁଁ ମିତ୍ର ।
ଦୁନ୍ଦୁଭି ଅସ୍ଥି ଯେ ଚରଣେ । ଫିଙ୍ଗିଲୁ ଅମ୍ଭେ ଯେ ଗଗନେ ।
ସପତାଳାକୁ ଛେଦିଲୁଁ । କାଣ୍ଡେକେ ବାଲୀକି ବଧିଲୁଁ ।
ଯେ ବାଳୀ ବାଟେ ଯାଉଥିଲା । ଏକା କାଣ୍ଡେ ସେହି ମଲା ।
ସୁଗ୍ରୀବରକୁ ରଜା କଲୁଁ । ରୋମା ତାରକୁ ସମର୍ପିଲୁଁ ।
ବାଳୀ ଭାରିଯା ତାରା ସତୀ । ସୁଗ୍ରୀବ ହେଲା ପ୍ରୀତିବତୀ ।
ମାଲ୍ୟବନ୍ତରେ ଯେ ରହିଲୁଁ । ବରଷା କାଳ କଟାଇଲୁଁ ॥
ଚଉଦିଗେ ପେଷିଲୁଁ ଦୂତ । ଦକ୍ଷିଣେ ଗଲା ହନୁମନ୍ତ ॥
ସମୁଦ୍ର ଡେଇଁ ହନୁ ଗଲା । ସେତ ଲଙ୍କାଗଡ଼ରେ ପଶିଲା ॥
ସମସ୍ତ ଘର ସେ ଖୋଜିଲା । ଅଶୋକବନେ ଠାବ କଲା ॥
ବେଢ଼ିଣ ସହସ୍ର ଅସୁରୀ । ମଧ୍ୟରେ ଜନକ କୁମାରୀ ।
ମୋର ସନ୍ଦେଶ ତାଙ୍କୁ ଦେଲା । ସତ୍ତ୍ୱଠାରୁ ମେଲାଣି ହେଲା ॥
ଆସିଲାବେଳେ ହନୁମାନ । ଭାଙ୍ଗିଲା ତୋର ମଧୁବନ ॥
ଅକ୍ଷୟ ଜମ୍ବୁମାଳୀ ମାରି । କେତେ ରାକ୍ଷସ ନାଶ କରି ॥
ଇନ୍ଦ୍ରଜିତ ଯେ ଧରିନେଲା । ତା ଦ୍ୱାରେ କି କରି ପାରିଲା ॥
ବା'ପ ତୋଏ ଯେ ଥିଲ ଧରି । ତାହାକୁ ନ ପାରିଲ ମାରି ॥
ତାହାର ଉପାୟ ସେ କଲା । ସମୂଳେ ଲଙ୍କା ପୋଡ଼ିଦେଲା ।
ମୋତେ ବାରତା ଦେଲା ନେଇ । ତେଣୁ ବଳ ସାଜିଲି ମୁହିଁ ।
ସମୁଦ୍ରେ ବନ୍ଧାଇଲି ବନ୍ଧ । ସାକ୍ଷାତେ ଦେଖ ଦଶକନ୍ଧ ।

ମୋହର ଅଜ୍ଞାରେ ପଙ୍କଜ । ଜଳେ ଭାସଇ ଷୋଳ ମଠ ।
ତୋହର ଭାଇ ବିଭୀଷଣ । ମୋ ପାଦେ ପଶିଲା ଶରଣ ।
ତାଙ୍କୁ ଦେଇଲୁ ଅମରବର । ଲଙ୍କାରେ ହେବ ନୃପବର ॥
ଏତେକେ ତୋର ମନେ ନାହିଁ । ମୋ ସଙ୍ଗେ ବାଦ କାହିଁପାଇ
ମୁହିଁ ନୁହଇ ତୋ ବଇରୀ । କିମ୍ପା ତୁ ନେଲୁ ମୋର ନାରୀ
ଯେବେ ତୁ ନେଲୁରେ ନ ଜାଣି । ଏବେ ତୁ ଦିଅ ବେଗେ ଆଣି
ମୋର ଭାରଯା ମୋତେ ଦିଅ । ନିଶ୍ଚିନ୍ତେ ଲଙ୍କାଗଡ଼େ ଥାଅ ॥
ଦେଖାଇ ଦେଲି ତୋର ଦୋଷ । ସୀତା ଦେଇ ଶରଣ ପଶ ॥
ଯେବେ ନ ଦେବୁ ସୀତା ମୋର । ହସ୍ତେ ଛେଦିବି ଦଶଶିର ॥
ମୋତେ ଯେ ଲକ୍ଷ୍ମଣ ରାମ । ଛୁଉଁଛୁ ଧନୁ ଶରାସନ ॥
ଶ୍ରୀରାମ ଚରଣରେ ଆଶ । ଭଣଇ ଲକ୍ଷ୍ମୀଧର ଦାସ ॥



ସେ ଲେଖା ଦେଖନ୍ତେ ରଘୁନାଥ । ଆପଣେ ବିଚାରନ୍ତି ଚିତ୍ତ ॥
ପୂର୍ବେ ଯେ ହନୁମନ୍ତ ଗଲା । ବହୁତ ଗୋଳ ତହିଁ କଲା ॥
ଶାସ୍ତ୍ରରେ ଲେଖିଛି ଏମନ୍ତ । ବଳବନ୍ତ ନ ଯିବ ଦୂତ ॥
ଯାହା ଯାହାର ଥାଇ ବଳ । କେବେହେଁ ମନ ତା ନ ମିଳ ।
ଏମନ୍ତେ ବିଚାରନ୍ତେ ମନ । ଉଠିଲା ବାଳୀର ନନ୍ଦନ ॥
ଖଣ୍ଡେ ଦୂରକୁ ଘୁଞ୍ଚିଗଲା । କରପଦ ଯୋଡ଼ି କହିଲା ।
ହେ ଦେବ ବ୍ରହ୍ମାଣ୍ଡଠାକୁର । ଲଙ୍କାଗଡ଼କୁ ମୁହିଁ ଗୃର ॥
ତୋ ଆଜ୍ଞା ହେଲେ ମୁହିଁ ଯିବି । ତୋତେ ବାରତା ଆଣିଦେବି ।
ଶ୍ରୀରାମ ବୋଇଲେ ରେ ସୁତ । ଏ କଥା ନୁହଇ ଉଚିତ ।
ତୁ ବାଳି ରାଜାର ନନ୍ଦନ । ଦୂତକୁ ନୋହୁ ତୁ ଭାଜନ ।
କୃତାର ବୋଇଲେ ରେ କୁମର । ଯିବେ ଯେ ଅନେକ ବାନର ॥
ରାଜ୍ୟେ ଶୁଭିବ ଅପବାଦ । ରାମ ବାଳୀଙ୍କି କଲେ ବଧ ।
ତାର ପୁତ୍ରକୁ ଦୂତ କଲେ । ଏ ଜନ୍ଦା ପାଇବଇଁ ହେଲେ ।
ଅଙ୍ଗଦ ବୋଇଲା ଗୋସାଇଁ । ଏ କଥା କହିଲ କିମ୍ପାଇଁ

ଜନ୍ମହୁଁ ଅଟଇ କୋସ୍ଥିର । ଜାଣିଲା ସେବକ ମୁଁ ତୋର ॥
ପୂର୍ବେ ଯେ ରାବଣ ସଙ୍ଗରେ । ଭେଟ ମୋ ଥିଲା ଦନାଭେଟରେ
ଏବେ ମୋତେ ସେ ଦଶଗ୍ରୀବ । ଚିହ୍ନିବ ସେ କି ନ ଚିହ୍ନିବ ।
ତେଣୁ ଯିବାକୁ ବଞ୍ଚଇ । ମୋ ଆଶା ନ ଭାଙ୍ଗ ଗୋସାଇଁ
ଶ୍ରୀରାମ ବୋଲନ୍ତି ରେ ସୁତ । ତୋହର କାହିଁ ଥିଲା ଭେଟ ।
ଅଙ୍ଗଦ ବୋଇଲା ଗୋସାଇଁ । ପୂର୍ବର କଥା କହୁବଇଁ ।
ଦନେ ସେ ରାଜ ଲଙ୍କରାଣ । ମୋର ପିତାକୁ ଦେଖି ପୁଣ ॥
ଖଟାଇ ହୁଅନ୍ତେଣ ତାକୁ । କାଙ୍ଖେ ଜାକଲା ରାବଣକୁ ॥
ସ୍ନାନ ସାରଣ ଗୃହକୁ ଗଲା । ଯାଙ୍କିବା ମନରେ ନ ଥିଲା ॥
ବସନ ପିନ୍ଧିବାର ବେଳେ । ଖସି ପଡ଼ିଲା କାଖୁଁ ତଳେ ॥
ମାସେ ପର୍ଯ୍ୟନ୍ତ ବନ୍ଧୀ ହୋଇ । ଉଚ୍ଛିଷ୍ଟ ଅନ୍ନ ନିତି ଖାଇ ।
ଦନେକ ପିତା ଯେ ମୋହର । ବୋଇଲେ ଶୁଣରେ କୁମର ।
ଏହାକୁ ଏଥୁଠାରୁ ନିଅ । ଶିର କାଟିଣ ବଳି ଦିଅ ।
ଆଜ୍ଞା ପ୍ରମାଣେ ଘେନଗଲି । ଗୁଳିଆପଦାରେ ହୋଇଲି ॥
ବୋଇଲି ଶୁଣ ଲଙ୍କେଶ୍ୱର । ଇଷ୍ଟଦେବତା ତୋ ସ୍ମର ॥
ତା ଶୁଣି ରାବଣ କହିଲା । ମୋ ଇଷ୍ଟ ଅଙ୍ଗଦ ହୋଇଲା
ମୋ ଇଷ୍ଟଦେବତା ଅଙ୍ଗଦ । ରକ୍ଷା କରବ କଶକାକ ॥
ତା ଶୁଣି ତାକୁ ଦୟା କଲି । ଚରଣେ ଧରି ପିଙ୍ଗିଦେଲି ॥
ଉଡି ସେ ଗଲା ଗଗନରେ । ପଡ଼ିଲା ଲଙ୍କା ଭୁବନରେ ॥
ସେ ଦିନୁ ତାହାର ମୋହର । ଭେଟ ଯେ ନାହିଁ [illegible] ।
ତେଣୁ ଯିବାକୁ ବଞ୍ଚଇ । ଚିହ୍ନି କି ସେ ଲଙ୍କା[illegible] ।
ଶୁଣି ଶ୍ରୀରାମ ତୋଷହେଲେ । ପୁଣିହି ଅଙ୍ଗଦେ ବୋଧ[illegible]
ଯେବେ ଲଙ୍କାକୁ ବାବୁ ଯିବୁ । ବିବାଦ [illegible] ନ [illegible]
ବୁଝିଛ ଅଟୁ ବାଳୀସୁତ । ଦୂତେଙ୍କ ଯେ ଗଲା ହନୁମନ୍ତ
ତାହାକୁ ସେଠାରେ ଧଇଲେ । ଅନେକ ମାଡ଼ ଯେ ମାଇଲେ ॥
କେବେହେଁ ଦୟା ସେ ନ [illegible] । [illegible]ଧାତ ପିଠେ ଏ ପିଟିଲେ ।

ହନୁ ନୋହିଲେ ଆନଥିଲେ । ଜୀବନ ନ ଯାନ୍ତା ସେ ଭଲେ ।
ଅଙ୍ଗଦ ବୋଲଇ ଗୋସାଇଁ । ତଡ଼ିଁ କି ମୁଁ ଯେ ନ ଡ଼ରଇ ।
ମୁଁ ଯେ ନୁହଇ ହନୁମନ୍ତ । ମୋତେ ବାନ୍ଧିବ ଇନ୍ଦ୍ରଜିତ ।
ତେ ଆଜ୍ଞା ଦେଲେ ରଘୁବୀର । ବସି ମୁଁ ଥିବ ଏହିଠାର ।
ଏଠାରୁ ଲକ୍ଷ ବଢାଇବି । ଲଙ୍କାକୁ ଉପାଡ଼ି ଆଣିବି ।
ସମୁଦ୍ରେ ପୋପାଡ଼ିବି ନେଇ । ସୀତା ଥିଲାକୁ ମୁଁ ଉଦ୍ଧରଇ ।
ଶୁଣି ଶ୍ରୀରାମ ତୋଷହେଲେ । ପ୍ରତିଜ୍ଞା ଶୁଣି ପ୍ରଶଂସିଲେ ।
ବୋଇଲେ ଶୁଣରେ କୁମର । ଦର୍ପେହେଁ ଉତ୍ତର ନ କର ॥
ତୋହର ଅସିବା ପଥଯନ୍ତ୍ରେ । ମନ ମୋ ନାହିଁ କଦାଚିତ୍ରେ ॥
ତୋ'ତେ ମୁଁ ଥିବ ବାଟଗୃହିଁ । ଲେଉଟି ଆସ ବେଗେ ଯାଇଁ ।
ଏମନ୍ତେ ଶ୍ରୀରାମ କହିଲେ । ଅଙ୍ଗଦ ହସ୍ତେ ଲେଖା ଦେଲେ ।
ଶ୍ରୀ ଲେଖା ଦେଖି ବାଳୀ ସୁତ । ଖୋସିଲା ଆପଣାର ମାଥ ।
ରାମଙ୍କୁ ପ୍ରଦକ୍ଷିଣ କଲା । ସେଠାରୁ ମେଲାଣି ହୋଇଲା ॥
ସୁଗ୍ରୀବଙ୍କ ଛନ୍ଦେ ଯେ ଜ୍ଞାକର । ମୁଁ ଯାଉଅଛି ଲଙ୍କାପୁର ॥
ହନୁମନ୍ତକୁ କୋଳ କଲା । ମୁଁ ଲଙ୍କା ଯାଉଛି ବୋଇଲା ।
ଶୁଣି ବୋଇଲା ହନୁମନ୍ତ । ଯେବେ ଲଙ୍କାକୁ ଯିବୁ ତୁ ତ ।
ଜାହାରେ ଧରା ତୁ ନ ଦେବୁ । କେବେହେଁ ଆଶା ନ ଛାଡ଼ିବୁ ।
ତାକ ତରକ ମଣିଥିବୁ । ନୟନ ତରାଟି ଗୃହିଁବୁ ।
ମୋ ହାତେ ମାଡ଼ ଛନ୍ଦିପାଇ । ତୋ ପାଶେ ନ ଥିବେ କେହି ।
ଅଙ୍ଗଦ ବୋଇଲେରେ ଭାଇ । ଆଗନ୍ତୁଁ ଏମନ୍ତ ନ କହ ।
ଦେଖିବା ଯେମନ୍ତ ପ୍ରକାର । କରିବା ତେମନ୍ତ ବ୍ୟୁର ।
ଏମନ୍ତ ଅଙ୍ଗଦ କହିଲା । ସେଠାରୁ ମେଲାଣି ହୋଇଲା ।
ଶ୍ରୀରାମ ଚରଣକୁ ଆଶ । ଶରଣ ଲକ୍ଷ୍ମୀଧର ଦାସ ।



ଏଡ଼ା କ୍ଷେପକେ ଡ଼େଇଁଗଲା । ପଞ୍ଚାଶ ଯୋଜନେ ବସିଲା ॥
ମେଘନାଦ ନାମେ ପାଚେରି । ଷୋଳଶ କୋଶ ଉଚ୍ଚ ସର ॥

ଦ୍ୱ କୋଶ ଅଟଇ ଓସାର । ଶୁଦ୍ଧ ସୁବର୍ଣ୍ଣ ପ୍ରାଚୀର ॥
ପାଚେରି ପରେ ସେ ବସିଲା । ଲଙ୍କା ଭୂମିକି ଦୃଷ୍ଟି ଦେଲା ।
ଦେଖିଲା ଲଙ୍କାର ନଗର । ସ୍ୱର୍ଗରୁଁ ନୋହେଁ ପଟାନ୍ତର ॥
କାହାର ମାଣିକ୍ୟର ଘର । କାହାରି ନୀଳାର ମନ୍ଦିର ॥
କାହାର ବଇଡୂର୍ଯ୍ୟ ବତା । କାହାର କନ୍ଦୁରେ ମୁକୁତା ।
ପିଢ଼ାରେ ସୁବର୍ଣ୍ଣ କଳସ । ନେତ ଉଡ଼ଇ ଝୀନବାସ ॥
ଅଠର କୋଶ ଲଙ୍କାପୁର । ସବୁଡ଼ ସୁବର୍ଣ୍ଣ ମନ୍ଦିର ।
ଏମନ୍ତ ଅଙ୍ଗଦ ଦେଖିଲା । କପାଳେ ହସ୍ତ ପକାଇଲା ।
ବୋଇଲା ଧନ୍ୟରେ ରାବଣ । କାହୁଁ ଅର୍ଜିଲୁ ଏତେ ଧନ ।
କେଉଁ ଦେବତା ପୂଜାକଲୁ । ଏତେକ ସମ୍ପଦ ପାଇଲୁ ।
ଅଳପ କଥାରେ ତୁ ପୁଣ । ହରାଉଛୁ ଏତେ ପଣ ॥
ଭଲ ରାବଣ ଭଲ କଲୁ । ସୀତାଙ୍କୁ ଚୋରାଇ ଆଣିଲୁ ।
ତୁ ଯେବେ ନ ଆଣନ୍ତୁ ସୀତା । ମୋର କି ଲଙ୍କା ଦେଖାହୋନ୍ତା ।
ଧନ୍ୟ ଅମ୍ଭର ବେନକର । ଭାଙ୍ଗିବୁଁ ଏ ଲଙ୍କା ନଗର ।
ଏମନ୍ତ ଅଙ୍ଗଦ ଭାବିଲା । ଲଙ୍କାକୁ ଡେଇଁଣ ପଡ଼ିଲା ।
ଲଙ୍କା ନିବାସୀ ଦେଖି କହ । ପଳାନ୍ତି ଅଖି ବୁଜ କହ ।
କେ ବୋଲେ ସେହୁ ଗୋ ସଙ୍ଗାତ । କେ ବୋଲେ ସେହୁ ମରକଟ ॥
ଏହୁ ଗୋ ପୂର୍ବେ ଆସିଥିଲା । ଆମ୍ଭମାନଙ୍କୁ ଦଣ୍ଡିଲା ॥
ଚହଳ ପଡ଼ୁ ତାର ମୁଣ୍ଡେ । ତା ନାମ ନ ଧର ଗୋ ତୁଣ୍ଡେ ।
କେ ବୋଲେ ଶଳା ମୋର ମଲା । କେ ବୋଲେ ମଲା ମୋ ମଉଳା ।
କେ ବୋଲେ ମଲା ମୋ ମାଉସୀ । କେ ବୋଲେ ମଲା ମୋ ପିଉସୀ ॥
କେ ବୋଲେ ମୋ ଜୁଆଇଁ ମଲା । ଝିଅ ମୋ ଘରେ ରାଣ୍ଡ ହେଲା ।
କେ ବୋଲେ ମଲା ମୋ ସମୁଧି । ସେଦିନୁ ହଜିଲା ମୋ ବୁଦ୍ଧି ।
କେ ବୋଲେ ମଲା ମୋର ଦାସୀ । ବାନରେ ହେବାରୁ ବିବାଦୀ ।
ଦୂରୁଁ କୁଣିଆ ଆସିଥିଲେ । ସେହୁ ଟୋକା ଦେଖି ଯାଇ ମଲେ ।
ଏବେକ ଲୁଙ୍ଗୁ ଲୁଙ୍ଗୁ ହୋଇ । ଏ କପି ଆସେ କାହିଁ ପାଇଁ ।

ଏମନ୍ତ ବୋଲଣ ପଳାନ୍ତି । ରାଗେ ଅରାଗେ ନ ଅନାନ୍ତି ।
ଏମନ୍ତ ଶୁଣି ବାଳୀସୁତ । ବୋଇଲା ଧନ୍ୟ ହନୁମନ୍ତ ॥
ଏମନ୍ତ ମାହେନ୍ଦ୍ରଙ୍କ ମହତ୍ତ୍ୱ । ଲଙ୍କାରେ ଉତ୍ପାତ ପଡ଼ନ୍ତି ।
ଚଳଇ ବାଳୀର କୁମର । ଖେଳନ୍ତା ସିଂହ ପଞ୍ଚାନ୍ତର ।
ଏମନ୍ତକାଳେ ଲଙ୍କେଶ୍ୱର । ବସିଛି ଜଗତି ଉପର ॥
ମହାଯନ୍ତ୍ରନାମେଣ ଜଗତି । ଚଉଦ କ୍ରୋଶ ଉଚ୍ଚ ସେଟି ।
ଦୁଇ କୋଶ ଅଟେ ଓସାର । ଶୁଦ୍ଧ ସୁବର୍ଣ୍ଣ ପ୍ରାଚୀର ।
ଏମନ୍ତବେଳେ ଲଙ୍କେଶ୍ୱର । ଡକାଇ ଆଣି ଦ୍ୱାରପାଳ ।
ଚାରିଦ୍ୱାରୀଙ୍କୁ ଜଣାଇଲା । ନୟନ ତରାଟି ଚାହିଁଲା ।
ଅରେ ରେ ତୁମ୍ଭେ ଦ୍ୱାରପାଳ । ନଙ୍ଗଳେ କବାଟକୁ କିଳ ।
ପଥରିମାନ ଲଗିଥିବ । ଯନ୍ତ୍ରକଳଣୀରେ କିଳିବ ।
ଦ୍ୱାରେକ ଦଶସହସ୍ର ରଥ । ଚାରିଦ୍ୱାରରେ ଏହିମତ ।
ରାତି ଦିବସ ଜଗିଥିବ । କପି ଗୋଟିଏ ନ ଛାଡ଼ିବ ॥
ଯା ଦ୍ୱାରେ ପଶିବ ବାନର । ବଂଶ ମୁଁ ମାରିବି ତାହାର ॥
ଛଟିଆ ବୁଢିଏ ପଶିଛି । ମାଙ୍କଡ଼ ଲୁଚାଏ ଆଣିଛି ।
ଏ ଯେ ଅଟଇ ସିନ୍ଧୁକୂଳ । ଏଥି ନ ମିଳେ ଫଳ ମୂଳ ।
ବାନରେ ଖାଇ ନ ପାରିବେ । ଯେତେକ ଛାଡ଼ି ପଳାଇବେ ।
ଆମ୍ଭେ ପଛରେ ଗୋଡ଼ାଇବୁଁ । ସମୁଦ୍ରେ ବୁଡ଼ାଇ ମାରିବୁ ।
ଯେତେକ ଜୀବନ୍ତା ଧରିବା । ଲଙ୍କାରେ ବ୍ୟଞ୍ଜନ କରିବା ॥
ଏମନ୍ତ ବୋଲୁବାର ବେଳେ । ମିଳିଲା ବାଳିର ଦୁଲାଳେ ॥
ବୋଇଲା ଅରେ ରେ ରାବଣ । ଉଠ ତୁ ବଶଙ୍କାନନ୍ଦନ ॥
ଦନ୍ତରେ ଧର ତୁ ତୃଣ । ଗଳାରେ ବାନ୍ଧ ତୁ ବସନ ॥
ସହସ୍ର ଦଣ୍ଡବତ କର । ଶ୍ରୀରାମ ଆଜ୍ଞା ଘେନ ଶିର ।
ଜଗତିରୁ ବେଗେ ଓହ୍ଲାଅ । ମୋଉରେ କୋଳିକର ନଅ ।
ଏମନ୍ତ ଅଙ୍ଗଦର ବାଣୀ । ହସି ଉଠିଲା ଲଙ୍କାମଣି ।
ବୋଇଲା ଅରେରେ ବାନର । ଏତେକ ଭରସା ତୋହର ॥

କେ ବାପ ଭରସାରେ ଆସି । ମୋ ଲଙ୍କାପୁରେ ଅଛୁ ପଶି ।
କେଉଁ ରାଜ୍ୟରେ ତୋର ଘର । କି ନାମ ଅଟଇ ତୋହର ।
କାହାର ଅଟୁ ତୁ ରେ ସୁତ । ଆସୁ କାହାର ହୋଇ ଦୂତ ।
ଅଙ୍ଗଦ ବୋଇଲେ ଭାଇ । ତୁ ମୋତେ ଚିହ୍ନିବୁରେ କାହିଁ ॥
ତୁ ମୋତେ ଚିହ୍ନିବୁ କେମନ୍ତେ । ପୂର୍ବର କଥା ନାହିଁ ଚେତେ ॥
ଶିଳାଅପଦାକୁ ତୁ ଅନା । ସେହୁ ଅଙ୍ଗଦ ମୁହିଁ ସିନା ॥
ମୁହିଁତ ବାଳୀର କୁମର । ଶ୍ରୀରାମଚନ୍ଦ୍ରଙ୍କ ଡ଼ଗର ।
ତା ଶୁଣି ରାବଣ କହଇ । କେଉଁ ରାମର ଦୂତ ତୁହି ॥
ତୁମ୍ଭେ ଯେ ବ୍ରହ୍ମାଣ୍ଡ ବୁଲୁଛ । ମୋ ପରି ଜଣେ କି ଦେଖିଛ ।
ତୁ ଅଟୁ କେଉଁ ଯେ ରାବଣ । ଆଗ କହନ ତୋର ନାମ ।
ତା ଶୁଣି ରାବଣ କହଇ । ସର୍ବ ଲୋକଙ୍କ ମୁଖ ଚାହିଁ ।
ମୁହିଁ ଜାଣଇ ଯେତେ ରାମ । କହଇ ତାହା ସବୁ ଶୁଣ ॥
ପୂର୍ବେ ଯେ ଏକ ରାମ ଥିଲା । ମିଥିଳାପୁରକୁ ସେ ଗଲା ।
ଶିବଧନୁ ଟେକି ନ ପାରି । ତହୁଁ ସେ ରାମ ମଲା ପଡ଼ି ।
ଆଉର ରାମେକ ଯେ ଥିଲା । ତା ପିତା ରାଜ୍ୟ ଛଡ଼ଦେଲା ।
ଅଧର୍ମ ପଣ ଦେଖି ତାର । ପିତା ରାଜ୍ୟରୁ କଲା ଦୂର ॥
ଆଉର ରାମେକ ଯେ ଥିଲା । ତାର ଭାର୍ଯ୍ୟା ଚୋର ନେଲା ।
ଏତେକ ରାମ ଜାଣେ ମୁହିଁ । ଅଙ୍ଗଦ ବୋଇଲେ ଭାଇ ।
କହିବ ଏହି ମତ ମୁହିଁ । ଯେତେ ରାବଣ ଦେଖିଛଇ ।
ପୂର୍ବେ ଏକ ରାବଣ ଥିଲା । ମିଥିଳା ପୁରକୁ ସେ ଗଲା ।
ଧନୁକୁ ଟେକି ନ ପାରିଲା । ଶୋଣିତ ବାନ୍ତି କରି ମଲା ।
ଆଉର ରାବଣେକ ଥିଲା । ପାତାଳ ପୁରକୁ ସେ ଗଲା ।
ଦେବା ଦେଖା ଯେ ବେନଜଣ । ପଶା ଖେଳନ୍ତି ଆନନ୍ଦେଣ ।
ସେ ପଶାକାଠି ଗଡ଼ିଗଲା । ସେ ଦେବା ତାକୁ ଆଜ୍ଞା ଦେଲା ॥
ବୋଇଲା ଦିଅ ପଶାକାଠି । ରାବଣ ନ ପାରିଲା ଟେକି ।
ପଶାକାଠି ଟେକି ନ ପାରି । ତହୁଁ ରାବଣ ମଲା ପଡ଼ି ।

ଅହୁର ରାବଣେକ ଥିଲା । ସହସ୍ରାର୍ଜୁନେ ବାନ୍ଧ କଲା ॥
ସହସ୍ରାର୍ଜୁନ ବାନ୍ଧି ନେଇ । କେକଟିକ ମାଡ ସେ ମାରଇ ।
ପାଞ୍ଚ ବେଣି ତାହାକୁ କଲା । ମୁଣ୍ଡରେ ଚୁନକାଳି ଦେଲା ॥
ଗଳାରେ ଚମକ ପକାଇ । ସହରେ ସହରେ ବୁଲାଇ ।
ପଥରେ ଶତା ଯେ ଭୁଟିଲା । ବ୍ରହ୍ମା ବଚନେ ଛାଡ଼ି ଦେଲା ।
ଅହୁର ରାବଣେକ ଥିଲା । ମୋ ପିତା ସଙ୍ଗେ ବାଦ କଲା
ମୋ ପିତା ବାଳି ଯେ ରାଜନ । ଚାରି ସମୁଦ୍ରେ କରେ ସ୍ନାନ ।
ଦକ୍ଷିଣ ସମୁଦ୍ରର କୂଳେ । ସ୍ନାନ କରିବାର ବେଳେ ॥
ପାଚେରୀ ପରେ ବସିଥିଲା । ପିତାଙ୍କୁ ଗଣ୍ଡାଇ ହେଇଲା ।
ଦେଖି ମୋ ପିତା ପିକ୍ରୁ ଡେଇଁ । କାଖତଳେ ଜାକିଲେ ନେଇ ॥
ପିତା ଯେ ଭୁବନକୁ ଗଲା । ପାମର କାଖମଧ୍ୟେ ଥିଲା ।
ବସନ ପିନ୍ଧିବାର ବେଳେ । ଖସି ପଡ଼ିଲା କାଖୁଁ ତଳେ ।
ଦେଖି ମୋ ପିତା କୋପ କଲେ । ବାନ୍ଧ ଘୋଡାଅ ରେ ବୋଇଲେ
ଏଡୁ ଦ୍ୱାରରେ ମୁଁ ଦଉଡି । ଚୋର ଗଳାରେ ଥିଲି ଭିଡି ।
ଯଷ୍ଟି ଖଣ୍ଡେ ଧନ କରେ । ନଚାଉ ଥିଲି ମୁଁ ଦାଣ୍ଡରେ ।
ମାଙ୍କ ମାଇଛୁ ମୁହିଁ ଯେତେ । ସଂଖ୍ୟା ନୋହଇ ତାହୁ କେତେ
ପିଠିକି ଦେଖି ମନେ କର । ସେ ପ୍ରାୟ ଗଳୁଛିକି ଚୋର ।
ଅହୁର ରାବଣେକ ଥିଲା । ସୀତାଙ୍କୁ ଚୋରାଇ ଆଣିଲା ।
ଏମନ୍ତ ମୋ ମନେ ବିଚାର । ତୁ ଅବା ଅଟୁ ସୀତାଚୋର ।
ତା ଶୁଣି ରାବଣ କହଇ । ଯେଉଁ କଥାକୁ ମୁଁ ଚାହଇ ।
ସେ କଥ କହୁଛ ବାନର । ଜାଣିଲି ଦୁଷ୍ଟପଣ ତୋର ।
କା ଲେଖା ଲେଖିଛୁରେ ପଢ଼ । ନ ପଢ଼ୁ କାହିଁ ମୋହ କଢ଼ ॥
ଅଙ୍ଗଦ ମନେ ବିଚାରଇ । କଳହ ତଳେ ମୁଁ ଅଛଇ ।
ପ୍ରଭୁଙ୍କ ଆଜ୍ଞା ତଳେ ଥୋଇ । କେମନ୍ତେ ପଢ଼ିବଇ ମୁହିଁ ॥
ଏମନ୍ତେ ମନେ ବିଚାରିଲା । ଲାଙ୍ଗୁଡ଼ ଟେକ କରି ଦେଲା ॥
ଜଗତରୁ ଉଚ୍ଚ ହୋଇଲା । ଗୋଡ଼କୁ ଲମ୍ବାଇ ବସିଲା ।
ରାବଣ ଜଗତକ ପାଦ । ବଢ଼ାଇ ବସିଲା ଅଙ୍ଗଦ ।

ଶଶିଲେଖା ଯେଉଁ ବାଳୀ ଗୃହେ । ରାବଣ ଆଗେ କଲା ପାଠ ।
ଆଦ୍ୟରେ ଶ୍ରୀ ଶ୍ରୀରାମ ବାଣୀ । ଅଯୋଧ୍ୟା ଦେଶ ନୃପମଣି ।
ସୂର୍ଯ୍ୟବଂଶରେ ଅବତାର । ଦଶରଥ ରାଜା କୁମର ।
ମୁହିଁ ଟି ବ୍ରହ୍ମାଙ୍କୁ ସର୍ଜିଲି । ବ୍ରହ୍ମାଙ୍କୁ ବ୍ରହ୍ମାପଦ ଦେଲି ॥
ମୁହିଁ ଟି ଦେବ ଚକ୍ରଧର । ବୈକୁଣ୍ଠପୁରେ ମୋର ଘର ।
କୌଶଲ୍ୟା ଗର୍ଭ ଉତପତ୍ତି । ନାମ ମୋହର ଦାଶରଥି ॥
ମୁହ ଟି ସ୍ୱର୍ଗେ ଇନ୍ଦ୍ର କଲି । ସକଳ ଦେବ ଭିଆଇଲି ।
ମୁହୁଁ ଟି କଲି ସିନ୍ଧୁ ସାତ । ମୁହୁଟି କଲି ଦ୍ୱୀପ ସାତ ।
ମୁହୁଟି ଦେବତା ବ୍ରାହ୍ମଣ । ମୁହୁ ସୃଷଇ ଦେବଗଣ ।
ଆଦ୍ୟ ପ୍ରାନ୍ତକରି ପଢିଲା । ଛନ୍ଦି ରାବଣ ନ ଚଳିଲା ।
ଅଙ୍ଗଦ ମନେ ବିଚାରଇ । ରାବଣ ଚଳିଲାଡ ନାହିଁ ।
ଏବେ ମୁଁ ଉପାୟ କରିବି । ଏଠାରେ ଲଗାଇ ପଢ଼ିବି ॥
ଏମନ୍ତ ମନେ ବିଚାରିଲା । ସେଠାରେ ଲଗାଇ ପଢ଼ିଲା ॥
ଲଙ୍କା ମାଝିଙ୍କି ପରମାଣ । ପଏଡା ଯାର ଆଜ୍ଞା ଘେନ ।
ଏମନ୍ତ ରାବଣ ଶୁଣିଲା । ଶୁଣିଲି ଶୁଣିଲି ବୋଇଲା ।
ମୁହୁଁ ଲଙ୍କାରେ ଦଣ୍ଡ ଅସି । କି ଲେଖା ଲେଖିଛୁ ସନ୍ନ୍ୟାସି
ଏମନ୍ତ କହୁ କ୍ରୋଧ ହେଲା । ଅଙ୍ଗଦେ ଶୁଣିଁ ବୋଇଲା ॥
କେଉଁ ବାପର ବଳ ପାଇ । ଲଙ୍କାରେ ପଶିଲୁ ଝପାଇ ।
ଏଠାରୁ ପ୍ରାଣ ଘେନ ପଳା । ଅରେ ଅଧମ ଜଳଜଳା ॥
ମାର୍କଣ୍ଡ ଅଟୁରେ ମାଙ୍କଡ଼ । ଭାଙ୍ଗି ଯିବ ତୋ ହାଡ଼ଗୋଡ଼ ।
କ୍ରୋଧେ ଅଙ୍ଗଦ କହେ ପୁଣ । ମାଙ୍କଡ଼େ ତୋର ଶତ୍ରୁ ଜାଣ ।
ଛଡି ଯିବ ତୋ ଢ଼ମପଣ । ନିକଟେ ହୋଇଲା ମରଣ
କହୁଛୁ କଥା ବଢ଼ି ବଢ଼ି । ଦାନ୍ତ ତୋହର ଦେବି ଝାଡ଼ି ।
ଶୃଗାଳ ତୁ ସିଂହ ଅଗ୍ରତେ । ଦେଖାଉ ପରାକ୍ରମ କେତେ ।
ଲାଜ ନାହିଁ କରେ ରାବଣ । ତୋହର ଅଟେ ମୃତ୍ୟୁ ଟାଣ ।
ବୋହୁଅ ଭାରଭାଡ ତୁଚ୍ଛ । ଦଶମୁଣ୍ଡିଆ ବଣଭୁଛ ॥
[illegible] । [illegible] ।

ମାରନ୍ତେ ବାନରଙ୍କୁ ବେଢ଼ି । ଭଙ୍ଗ କରୁଛନ୍ତି ବଢ଼ି ବଢ଼ି ।
ମାର ବୋଲନ୍ତି ସହସ୍ର ବୀର । ଢେଉଁ ପଡ଼ନ୍ତେ ସଭାଭିତର ।
ଶାବଳ ଶକ୍ତି ଯେ ମୁଦ୍‌ଗର । ଅସି ଲଙ୍କେଶ କୁନ୍ତ ଧାର ॥
ଅଙ୍ଗଦ ଉପରେ ପଡ଼ନ୍ତି । ଅଙ୍ଗଦ ପୃଷ୍ଠଦେଶେ ପିଟି ।
ଅଙ୍ଗଦ ମନେ ବିଚାରଇ । ଆସିବା ବେଳେ ରଘୁସାଇଁ ।
ବିବାଦ ନ କରିବ ବୋଲି । ରାମ ଯେ କହିଛନ୍ତି ଭଲି ॥
ରାମ ଯେ ଏହା ନ ଜାଣନ୍ତି । ଦୁଷ୍ଟଙ୍କୁ ସନ୍ତୋଷେ ମଣନ୍ତି ॥
ମୁଁ ଏବେ ସହି ନ ପାରିବି । ଅଳପ କରି ଦଣ୍ଡିବି ॥
ଏମନ୍ତେ ମନେ ବିଚାରିଲା । ସେ ବିଶ୍ୱମୂର୍ତ୍ତି ପ୍ରକାଶିଲା ॥
ସାଠିଏ କ୍ରୋଶ ଲମ୍ବ ତାର । ବଢ଼ାଇ ବାଳିର କୁମର ॥
ଏକ ଲକ୍ଷେକ ଅଶ୍ୱାରୋହୀ । ବାନ୍ଧିଲା ଲାଙ୍ଗୁଳରେ ତହିଁ ॥
ପୁଣି ଲକ୍ଷେକ ପଦାତିର । ଯାକିଲା କାଖର ଭିତର ।
କାହାକୁ ଟେକି ପାଲ କରି । ପକାଇ ତଳେ ମାର କରି ॥
ହାତୀକି ହାତୀ କଚାଡ଼ଇ । କାହାର ମୁଣ୍ଡ ଯେ ଛେଚଇ ।
ଅଙ୍ଗଦ ମାରେଣ ଦେଖିଲେ । ରଥୀ ପଦାତି ପଳାଇଲେ ।
ଥୋକେ କାଣ୍ଡ ଖଣ୍ଡା ପକାଇ । ଦେବଗଣାଦି ସ୍ୱାମୀ ଆମ୍ଭେ ଭାଇ ।
ଆମ୍ଭଙ୍କୁ ନ ମାର ନ ମର । ବୋଲି ଯୋଡ଼ିଲେ ବେନି କର ।
କେ ଦନ୍ତେ ତୃଣ ଧରିଣ । କେ ବୋଲେ ଅଙ୍ଗଦ ଶରଣ ।
କେ ବୋଲେ ଏ ରାଜ୍ୟ ଆମ୍ଭର । ଘର ନୁହଇ କପିବର ।
ତାହାଙ୍କ ବିକଳ ଦେଖିଲା । ତହୁଁ ଅଙ୍ଗଦ ବାହୁଡ଼ିଲା ।
ବୋଇଲା ଆରେ ରେ ରାବଣ । ଜାଣିବା ତୋହର ବଡ଼ପଣ ।
ଏମନ୍ତ ବୋଲିଣ ବୋଇଲା । ଜଗତୀ ଉପରେ ବସିଲା ।
ଝମ୍ପନ୍ତେ ବାଳୀର କୁମର । ହସ୍ତାନେ ପଡ଼େ ଲଙ୍କେଶ୍ୱର ॥
ରାବଣ ଦେଖେ ଅଣ୍ଟୁ ଦେଲା । କହନ୍ତେ କେ ରଣ୍ଡ ବୋଇଲା
ଆରେ ଶ୍ରୀରାମ ଆଜ୍ଞା ନାହିଁ । ମୁଣ୍ଡ ମୋଡ଼ନ୍ତି ଏହିଠାଇଁ ॥
ଏମନ୍ତ ବୋଲି ଦଶୁଣ୍ଡନ୍ତେ । ମୁକୁଟ ପଡ଼ିଲା ତା ହସ୍ତେ ॥
ରତ୍ନ ମୁକୁଟ ଘେନିଗଲା । ଧୂବଳ ପର୍ବତରେ ଦେଲା ।
ରତ୍ନ ମୁକୁଟ ତଳେ ଥୋଇ । ରାମ ପାଦେ ପଡ଼ିଲା ଯାଇ ॥

ଶୀତଲେଖା ଦେଇ ବାଳୀ ଗୃହେ । ରାବଣ ଅଗେ କଲା ପାଠ ।
ଆଦ୍ୟରେ ସ୍ବସ୍ତି ଶ୍ରୀରାମ ବାଣୀ । ଅଯୋଧ୍ୟା ଦେଶ ନୃପମଣି ।
ସୂର୍ଯ୍ୟବଂଶରେ ଅବତାର । ଦଶରଥ ରାଜା କୁମର ।
ମୁହିଁ ଟି ବ୍ରହ୍ମାଙ୍କୁ ସର୍ଜିଲି । ବ୍ରହ୍ମାଙ୍କୁ ବ୍ରହ୍ମାପଦ ଦେଲି ॥
ମୁହିଁ ଟି ଦେବ ଚକ୍ରଧର । ବୈକୁଣ୍ଠପୁରେ ମୋର ଘର ।
କୌଶଲ୍ୟା ଗର୍ଭୁ ଉତ୍ପତ୍ତି । ନାମ ମୋହର ଦାଶରଥି ॥
ମୁହିଁ ଟି ସ୍ୱର୍ଗେ ଇନ୍ଦ୍ର କଲି । ସକଳ ଦେବ ତୁଆଇଲି ।
ମୁହିଁ ଟି କଲି ସିନ୍ଧୁ ସାତ । ମୁହିଁ ଟି କଲି ଦ୍ୱୀପ ସାତ ।
ମୁହିଁ ଟି ଦେବତା ବ୍ରାହ୍ମଣ । ମୁହିଁ ଋଷି ଦେବଗଣ ।
ଆଦ୍ୟ ପ୍ରାନ୍ତକର ପଢିଲା । ତହିଁ ରାବଣ ନ ଚଳିଲା ।
ଅଙ୍ଗଦ ମନେ ବିଚାରଇ । ରାବଣ ଚଳିଲାଟି ନାହିଁ ।
ଏବେ ମୁଁ ଉପାୟ କରିବି । ଏଠାରେ ଲଗାଇ ପଢ଼ିବି ॥
ଏମନ୍ତ ମନେ ବିଚାରିଲା । ସେଠାରେ ଲଗାଇ ପଢ଼ିଲା ॥
ଲଙ୍କା ମାଟିଙ୍କ ପରମାଣ । ପଏଡା ଯାର ଆଜ୍ଞା ଦେନ ।
ଏମନ୍ତ ରାବଣ ଶୁଣିଲା । ଶୁଣିଲି ଶୁଣିଲି ବୋଇଲା ।
ମୁହିଁ ଲଙ୍କାରେ ଦଣ୍ଡ ଅଛି । କି ଲେଖା ଲେଖିଛୁ ସନ୍ନ୍ୟାସୀ
ଏମନ୍ତ କହୁ କ୍ରୋଧ ହେଲା । ଅଙ୍ଗଦେ ଗୃହିଁଣ ବୋଇଲା ॥
କେଉଁ ବାପର ବଳ ପାଇ । ଲଙ୍କାରେ ପଶିଲୁ ଝସାଇ ।
ଏଠାରୁ ପ୍ରାଣ ଦେଇ ପଳା । ଆରେ ଅଧମ ଜଳଜଳା ॥
ମାର୍କିଛ ଅଟୁରେ ମାଙ୍କଡ଼ । ଭାଙ୍ଗି ଯିବ ତୋ ହାଡ଼ଗୋଡ଼ ॥
କ୍ରୋଧେ ଅଙ୍ଗଦ କହେ ପୁଣ । ମାଙ୍କଡ଼େ ତୋର ଶତ୍ରୁ ଜାଣ ।
ଛାଡ଼ ଯିବ ତୋ ଡମ୍ଫପଣ । ନିକଟେ ହୋଇଲା ମରଣ ॥
କହୁଛୁ କଥା ବଢ଼ି ବଢ଼ି । ଦାନ୍ତ ତୋହର ଦେବି ଝାଡ଼ି ।
ଶୃଗାଳ ତୁ ସିଂହ ଅଗ୍ରତେ । ଦେଖାଉ ପରାକ୍ରମ କେତେ ।
ଲାଜ ନାହିଁ କିରେ ରାବଣ । ଚୋରର ଅଟେ ମୁହଁଟାଣ ।
ବୋହୁଅ ଜାରଜାତ ଭୁତ । ଦଶମୁଣ୍ଡିଆ ବଣଭୁତ ॥
ଶୁଣିଣ କ୍ରୋଧରେ ଜଳଣ । ଉଠାଉ ଅମର ସର୍ବେ ।

ମାରରେ ବାନରଙ୍କୁ ବେଢ଼ି । ଭଙ୍ଗ କରୁଛନ୍ତି ବଢ଼ି ବଢ଼ି ।
ମାର ବୋଲନ୍ତି ସହସ୍ର ବୀର । ଢେଉଇଁ ପଡଲେ ସଭାତଳ ।
ଶାବଳ ଶକ୍ତି ଯେ ମୁଦ୍ଗର । ଅସି ଲାଙ୍ଗିଅ କୁନ୍ତଧାର ॥
ଅଙ୍ଗଦ ଉପରେଣ ପିଟି । ଅଙ୍ଗଦ ପଛଅଙ୍କୁ ପିଠି ।
ଅଙ୍ଗଦ ମନେ ବିଚାରଇ । ଆସିବା ବେଳେ ଭାବଗ୍ରାହୀ ।
ବିବାଦ ନ କରିବ ବୋଲି । ରାମ ଯେ କହିଛନ୍ତି ଭଲି ॥
ରାମ ଯେ ଏହା ନ ଜାଣନ୍ତି । ଦୁଷ୍ଟଙ୍କୁ ସନ୍ତରେ ମଣନ୍ତି ॥
ମୁଁ ଏବେ ସହି ନ ପାରିବି । ଅଳପ କରି ଦରଶିବି ॥
ଏମନ୍ତେ ମନେ ବିଚାରିଲା । ସେ ବିଶ୍ୱମୂର୍ତ୍ତି ପ୍ରକାଶିଲା ॥
ସାଠିଏ କ୍ରୋଶ ଲମ୍ବ ତାର । ବଢ଼ାଇ ବାଳିର କୁମର ॥
ଏକ ଲକ୍ଷେକ ଅଶ୍ୱାରୋହୀ । ବାନ୍ଧିଲା ଲାଙ୍ଗୁଡ଼ରେ ଛନ୍ଦି ॥
ପୁଣି ଲକ୍ଷେକ ପଂଖାକାର । ଯାକିଲା କାଖର ଭିତର ।
କାହାକୁ ବେନି ଫାଳ କରି । ପକାଇ ଦେଲେ କାହିଁ କରି ॥
ହାତିଙ୍କି ହାତ କଚାଡ଼ଇ । କାହାର ମୁଣ୍ଡ ଯେ ଛେଚଇ ।
ଅଙ୍ଗଦ ମାରେଣ ଦେଖିଲେ । ରଥୀ ପଦାତି ପଳାଇଲେ ।
ଥୋକେ କାଣ୍ଡ ଖଣ୍ଡା ପକାଇ । ଦେଖଣାହାରୀ ଅମ୍ଭେ ଭାଇ ।
ଅମ୍ଭଙ୍କୁ ନ ମାର ନ ମର । ବୋଲି ଯୋଡ଼ିଲେ ବେନିକର ।
କେ ଦନ୍ତେ ତୃଣ ଧରିଣ । କେ ବୋଲେ ଅଙ୍ଗଦ ଶରଣ ।
କେ ବୋଲେ ଏ ରାକ୍ଷସ ଅମ୍ଭର । ଘର ନୁହଇ କପିବର ।
ତାହାଙ୍କ ବିକଳ ଦେଖିଲା । ତହୁଁ ଅଙ୍ଗଦ ବାହୁଡ଼ିଲା ।
ବୋଇଲା ଆରେ ରେ ରାବଣ । ଜାଣିବା ତୋର ବଡ଼ପଣ ।
ଏମନ୍ତ ବୋଲିଣ ବୋଇଲା । ଜଗତି ଉପରେ ବସିଲା ।
ଏମନ୍ତେ ବାଳିର କୁମର । ଉତ୍ତରେ ପଚାରେ ଲଙ୍କେଶ୍ୱର ॥
ରାବଣ ଦେହେ ଅଣୁ ଦେଲା । କହରେ କେ ରଣୁ ବୋଇଲା ।
ଆରେ ଶ୍ରୀରାମ ଆଜ୍ଞା ନାହିଁ । ମୁଣ୍ଡ ମୋଡନ୍ତି ଏହିଠାଇଁ ॥
ଏମନ୍ତ ବୋଲି ଦରଶନ୍ତେ । ମୁକୁଟ ପଡ଼ିଲା ତା ହସ୍ତେ ॥
ଚାଳି ମୁକୁଟ ଦେନିଗଲା । ଧୁବଳ ପଙ୍କତରେ ଦେଲା ।
ଚାଳି ମୁକୁଟ ତଳେ ଥୋଇ । ରାମ ପାଦେ ପଡିଲା ଯାଇ ॥

ଶ୍ରୀରାମ ବୋଇଲେ ହେ ସୁତ । ତପ କରିଲା ଲଙ୍କନାଥ ।
ଜାନକୀ ଦେବ କି ମୋହର । ଜିଣିବା କରିବ ସମର ।
ବିଭୀଷଣ ବୋଲେ ଗୋସାଇଁ । କି ଦେଖି କି ବଚ୍ଛରୁ ତୁମ୍ଭ ।
ସେ ଯେବେ ଦେବାର ଥାନ୍ତା । ଏ କପି ଏମାନ ଆଣନ୍ତା ।
ଅଙ୍ଗଦ ନେବ ଇଲା ଗୋସାଇଁ । ଯେତେ ମୁଁ କହିଲି ବୁଝାଇ ।
କେବେହେଁ ଦେବା ସେ ନକଲା । ବିବାଦ କରିବ ବୋଇଲା ॥
ଶୁଣି ଶ୍ରୀରାମ କୋପ କଲେ । ଆକାଶ ମାର୍ଗକୁ ଚାହିଁଲେ ।
ଅଛନ୍ତି ସକଳ ଦେବଗଣ । ଅଗ୍ନି ନଇବୃତ ପବନ ॥
ସକଳ ଦେବେ ଅଛ ବହି । ଏଥେଁ ମୋହର ଦୋଷ ନାହିଁ ॥
ଶ୍ରେଷ୍ଠ ହେଉବ ଦଶଶିର । ଏ କଥା ସତ୍ୟ ସତ୍ୟ ମୋର ॥
ମୁକୁଟ ଶ୍ରୀହସ୍ତେ ଧଇଲେ । ବିଭୀଷଣ ଶିରେ ବାନ୍ଧିଲେ ॥
ଯାବତ ଚନ୍ଦ୍ର ଦିବାକର । ଯାବତ ମେଦିନୀ ସାଗର ॥
ଯାବତ ଥିବ ବସୁମତୀ । ଲଙ୍କାରେ ହୋଇବୁ ନୃପତି ॥
ଶୁଣି ବୋଇଲେ ବିଭୀଷଣ । ନମିଲେ ଶ୍ରୀରାମ ଚରଣ ॥
ହେ ଦେବନନ୍ଦନ ବଚନ । ପାଷାଣ ରେଖାର ସମାନ ।
ଜାଣେ ଏସ ରାବଣ ଶୁଣିବ । ତେଣେତେ ଜାନକୀ ସମର୍ପିବ ॥
ଯେବେ କି କରିବୁ ଗୋସାଇଁ । ରାମ ବୋଇଲେ ଚିନ୍ତା ନାହିଁ ।
ଯେବେ ଜାନକୀ ଦେବ ମୋର । ମୁଁ ଦେବି ଅଯୋଧ୍ୟା ନଗର ॥
ମୁଁ ପଛେ ଜନସ୍ତେ ରହିବି । ଏ କଥା ଅବଶ୍ୟ କରିବି ।
ଆକାଶେ ଦେବଗଣ ଥିଲେ । ଜୟ ଦୁନ୍ଦୁଭି ବଜାଇଲେ ॥
ରାଜା ହୋଇଲେ ବିଭୀଷଣ । ଦେଖି ଆନନ୍ଦ ଦେବଗଣ ।
ଆକାଶୁଁ ପୁଷ୍ପ ବରଷନ୍ତି । ଅପସରାମାନେ ନାଚନ୍ତି ॥
ହେ ରାମ ଯୁଗଳ ପୟର । ଶରଣ ପଶେ ଇଷ୍ଟୀଧର ॥



ଶୁଣ ସ୍ୱଜନେ ଦେଇ ମନ । ଶ୍ରୀରାମ ଚାହିଁ ବିଭୀଷଣ ॥
ବୋଇଲେ ଶୁଣ ଲକ୍ଷ୍ମଣ । ଧର୍ମ ଲଙ୍ଘିଲା ଦଶାନନ ।
ସୈନ୍ୟ ଘେନଣ ଚାଲିଯିବା । ଲଙ୍କାରେ ସମର କରିବା ।
ଶୁଣି ମରକଟ ମୁଖ [illegible] । ଧରିଲେ ହୋଇ [illegible] ॥

ରାବଣ ଚର ତାହା ଦେଖି । ବେଗେ ଧାଇଁଲା ହୋଇ ଦୁଃଖି ॥
କହିଲା ରାବଣ ଅଗ୍ରେ । ଶୁଣମା ଲଙ୍କାର ଠାକୁର ।
ପାଚେରୀ ଡେଇଁଣ ବାନରେ । ପଶିଲେ ଗଡର ଭିତରେ ॥
ରାବଣ ଶୁଣି ଅତି ବେଗେ । ଚଳିଲେ ଚାହିଁ ଚଉଦିଗେ ॥
ମନ୍ତ୍ରୀଙ୍କ ମୁଖକୁ ଚାହିଁଲା । ସୈନ୍ୟକୁ ସାଜରେ କହାଇଲା ।
ଶୁକ ସାରଣ ଆଜ୍ଞା ପାଇ । ସୈନ୍ୟ ସାଜିଲେ ବେଗ ହୋଇ ।
ରାବଣ ହୋଇଲା ବାହାର । ସଙ୍ଗରେ ଅନେକ ଅସୁର ।
ଉଭୟ ବଳ ଭେଟ ହେଲେ । ମହା ସମର ଆରମ୍ଭିଲେ ॥
ଅସୁରେ ବର୍ଷନ୍ତି ଶର । ଯେସନ୍ତେ ବରଷା ମେଘଧାର ॥
ବାନରେ ପଶନ୍ତି ଧସାଇ । ମାରନ୍ତି ଅସୁରେ ଚୋଭାଇ ॥
କେହୁ ବସନ୍ତି ଡେଇଁ ରଥେ । ଶୂଳ ମାରନ୍ତି ରଥୀ ମାଥେ ॥
କେହୁ ଛିଣ୍ଡନ୍ତି ନାକ କାନ । ବୃକ୍ଷ ପିଟନ୍ତି ନଠାରେଣ ॥
ବାନରେ କଉତୁକ ହୋଇ । ନାଚନ୍ତି ଗାଲରୁ ସୀ ବାଇ ।
ହନୁକୁ ଦେଖିଣ ରାବଣ । ଯୁଦ୍ଧ ଉପେକ୍ଷିଲା ଆପଣ ।
ଇନ୍ଦ୍ରଜିତକୁ ଡାକକରି । ରାବଣ କହେ କ୍ରୋଧ କରି ॥
ତପସ୍ୱୀ ସୈନ୍ୟ ଯେ ଅଇଲେ । ଅସୁର ସୈନ୍ୟ ବିନାଶିଲେ ॥
ବାନର ଅପ୍ରମେୟ ଥାଟ । ମୋରାଜ୍ୟ କରିଗଲେ ନଷ୍ଟ ॥
ଶୁଣି ବୋଇଲା ଇନ୍ଦ୍ରଜିତ । ତପସ୍ୱୀ ମୁଁ କରିବି ହତ ॥
ଯୁଦ୍ଧକୁ ହୋଇଲା ବାହାର । ସଙ୍ଗରେ ସଇନ ଅପାର ॥
ଶ୍ରୀରାମ ଆଗେ ବିଭୀଷଣ । ଶୁଣିମା ହେଉ ରଘୁରାଣ ॥
ଯୁଦ୍ଧେ ଆସନ୍ତି ଇନ୍ଦ୍ରଜିତ । କରିବ ଆଜ ଅପଘାତ ॥
ଶୁଣି ସାଜିଲେ ରାମ ସୈନ୍ୟ । ତହୁଁ ହୋଇଲା ମହାରଣ ॥
ଦେଖି ଧାଇଁଲା ଇନ୍ଦ୍ରଜିତ । କପଟେ କଲା ଶରଘାତ ॥
ତାହାର ବାଣଘାତେ ପୁଣ । ବାନରେ ହେଲେ ହତଜ୍ଞାନ ॥
ରାମ ସହିତେ ହନୁମନ୍ତ । ଲକ୍ଷ୍ମଣ ଆଦି ତାରାସୁତ ॥
ମାରିଣ ଇନ୍ଦ୍ରଜିତ ଗଲା । ରାବଣ ଆଗରେ କହିଲା ।
ମାରି ଆଇଲି ରାମ ଆଦି । ଆଉ କେ ଅଛି ତୋର ବାଦୀ ।
ଯୁଦ୍ଧ ଦେଖିଣ ବିଭୀଷଣ । ପଳାଇ ଲୁଚିଥିଲା ପୁଣ ।

ଆସି ହୋଇଲା ରାମକଟକ । ମୋହେ ଅଛନ୍ତି ସୀତାପତି ।
କାନ୍ଦଇ ରାମପାଶେ ବସି । ଏହା ମୁଁ ଅରଜିଲି ଆସି ।
ମୋ ବୋଲ ନ କଲ ଯେ ତୁମ୍ଭେ । ମାରଣ ଗଲା ଛନ୍ଦ ଯୁଦ୍ଧେ ॥
ବିଭୀଷଣ ବୋଲେ ହେ ହନୁ । ଔଷଧ ବେଗେ ଆଣ ବନୁ ।
ଶୁଣି ଧାଇଁଲା ହନୁମନ୍ତ । ବନରୁ ଆଣିଲା ପର୍ବତ ॥
ଔଷଧ ଘେନ ବିଭୀଷଣ । ସିଞ୍ଚିଲେ ସୈନ୍ୟ ଉପରେଣ
ସିଞ୍ଚନ୍ତେ ସମସ୍ତଙ୍କ ମୁଖେ । ସର୍ବେ ଉଠିଲେ ମହାସୁଖେ ॥
ବିଭୀଷଣ ଯେ କହେ ବାଣୀ । ରାବଣ ଆସିବ ଏକ୍ଷଣି ॥
କପଟେ ସର୍ବେ ନିଦ୍ରା ଯାଅ । ଅସୁର ହାତୁଁ ରକ୍ଷା ପାଅ ।
ଶୁଣି ସର୍ବେ ତାହା କଲେ । ଅସୁର ତହିଁ ପ୍ରବେଶିଲେ ।
ରାବଣ ସମସ୍ତଙ୍କୁ କହି । ବାନରେ ନିଅ ଏଥୁ ବହି ॥
ଆଜ୍ଞା ପାଇଣ ସେ ଅସୁରେ । ବାନରେ ନେଲେ ବୋହିଭାରେ
ବହି ଯେ ନିଅନ୍ତି ଲଙ୍କାକୁ । ଆନନ୍ଦ ହୋଇଲେ ମନକୁ ।
ରାବଣ ଅସୁରଙ୍କୁ କହି । ବାନରେ ମାଂସ ଖାଅ ନେଇ ॥
ଉତ୍ତମ ହୋଇବ ବ୍ୟଞ୍ଜନ । ଶୁଣି ଅସୁରେ ତୋଷ ମନ ।
ଅନେକ କପି ଘେନଗଲେ । ହନୁମନ୍ତର ପାଶେ ହେଲେ ॥
ତା ଦେହେଁ ଦିଅନ୍ତେଣ ହସ୍ତ । ଉଠି ବସିଲା ହନୁମନ୍ତ ।
ଧଇଲା ତାହାଙ୍କୁ ସାଉଁଟି । ଭୂମିରେ ପକାଇଲା ପିଟି ॥
ଲଙ୍କାକୁ ନେଲେ ଯେତେ ବହି । ସରବା କରିବାର ପାଇଁ ।
ଅସୁରମାନେ ଶସ୍ତ୍ର ଧରି । ମାଂସ କାଟିବା ବୋଲି କରି ।
ବାନରେ ସେ ଶସ୍ତ୍ର ଛଡ଼ାଇ । ମାଇଲେ ଅସୁରେ ଗୋଡ଼ାଇ ।
ଲଙ୍କାରେ ପଡ଼ିଲା ଚହଳ । ବାନରେ କରୁଛନ୍ତି ଗୋଳ ॥
ରାବଣ ଡରେ ପଳାଇଲା । କୁମ୍ଭକର୍ଣ୍ଣକୁ ଉଠାଇଲା ।
ଯୁଦ୍ଧକୁ ହୋଇଲା ବାହାର । ସଙ୍ଗତେ ଘେନାଇ ଅସୁର ॥
ଶ୍ରୀରାମ କହେ ବିଭୀଷଣ । ଶୁଣିମା ହେଉ ସାବଧାନ ।
ଯୁଦ୍ଧେ ଆଇଲା କୁମ୍ଭକର୍ଣ୍ଣ । ବାନର କରିବ ନିଧନ
କରିବ ଘୋର ସଂଗ୍ରାମ । ଆପଣେ ତାଙ୍କୁ କର ବଧ ॥

ପୁଣି ଶ୍ରୀରାମ ଶର ଛେଡ଼ିଲେ । ତା ସଙ୍ଗେ ଘୋର ରଣ କଲେ
ଅର୍ଦ୍ଧଚନ୍ଦ୍ର ଶର ଘୋଡ଼ି ହାତ । ଛିଣ୍ଡାଇ ଦେଲେ ରଘୁନାଥ ।
ମାହଳ ପଡ଼ି କୁମ୍ଭକର୍ଣ୍ଣ । ଗଡ଼ି ଯାଇଲା କପିସୈନ୍ୟ ।
ବାବଲ ଶବେ ତାର ଶିର । ଛିଣ୍ଡାଇ ଦେଲେ ରଘୁବୀର ॥
ଅସୁର ଭୟେ ପଳାଇଲେ । ରାବଣ ଆଗରେ କହିଲେ ॥
ଶୁଣି ରାବଣ ଶୋକ କଲା । ତପସ୍ୱୀ ଏତେ ଦୁଃଖ ଦେଲା ॥
ଇନ୍ଦ୍ରଜିତକୁ ଡାକ କହି । କହିଲା ତାକୁ ଶୋକ କରି ।
ଲଙ୍କାରେ ଯେତେ ବୀର ଥିଲେ ଯୁଦ୍ଧରେ ସମସ୍ତେ ମରିଲେ ॥
ତୋର ବାହୁକୁ ଆଶ୍ରା କରି । ତୁ ରକ୍ଷା କର ଲଙ୍କାପୁରୀ ।
ଶୁଣିଣ ଇନ୍ଦ୍ରଜିତ ବୀର । ପ୍ରତିଜ୍ଞା କଲାକ ଅପାର ।
ରାମ ଲକ୍ଷ୍ମଣ ଦେବୀ ମାରି । ନିଶ୍ଚିନ୍ତେ ଭୋଗିବାର ଶିରୀ ।
ଯୁଦ୍ଧକୁ ହୋଇଲା ବାହାର । ଘେନାଇ ଅନେକ ଅସୁର ।
ବେଢ଼ିଲେ ଶ୍ରୀରାମ ସଇନ । ସଙ୍ଗତେ ଘେନିଣ ଲକ୍ଷ୍ମଣ ।
ଯୁଦ୍ଧରେ ମଲା ଇନ୍ଦ୍ରଜିତ । ସାନନ୍ଦ ହେଲେ ରାମଭ୍ରାତ ।
ରାବଣ ପାଇଲା ବାରତା । ବହୁତ କଲା ମନେ ଚିନ୍ତା ।
ପୁତ୍ର ମରଣ ଶୋକ ଧରି । ଆଇଲା ସୈନ୍ୟ ପାଛ କରି ।
ଯୁଦ୍ଧେ ମାଇଲା ବ୍ରହ୍ମଶର । ପଡ଼ିଲା ଲକ୍ଷ୍ମଣ ଉପର ॥
ମାରିଣ ଗଲା ଲଙ୍କାପୁର । ଏବେ ତୁ ଶୁଣ ନୃପବର ॥
ଲକ୍ଷ୍ମଣ ଶରଘାତ ପାଇ । ପଡ଼ିଲେ ଅଚେତନ ହୋଇ ।
ଶ୍ରୀରାମ କଲେ ଯେତେ ଶୋକ । ଲେଖିଲେ ହୋଇବ ଅନେକ ॥
ଜାମ୍ବବ କରଯୋଡ଼ି କହେ । ଏଥକୁ ଅଛି ମୋ ଉପାୟେ ।
ଗନ୍ଧମାଦନ ହନୁ ଯିବ । ସତ୍ୱରେ ଔଷଧ ଆଣିବ ।
ଆଜ୍ଞା ପାଇଣ ହନୁ ଗଲା । ପର୍ବତ ସହିତେ ଆଣିଲା ।
ରଖିଲା ଜାମ୍ବବର ଆଗେ । ଔଷଧ ଦେଇ ତହୁଁ ବେଗେ ।
ଲକ୍ଷ୍ମଣ ଘାଆରେ ଯେ ଦେଲେ । ସଚେତ ହୋଇଣ ବସିଲେ ।
ସାନନ୍ଦ ହୋଇଣ ଶ୍ରୀରାମ । ଆବର କପି ସୈନ୍ୟଗଣ ॥
ଶ୍ରୀରାମ ପଙ୍କଜଚରଣ । ଲକ୍ଷ୍ମୀଧରର ରହୁ ମନ ॥

ଶ୍ରୀରାମ ସୈନ୍ୟଗଣ ରାଇ । କହନ୍ତି ତାହାଙ୍କୁ ଚୂ[illegible]ଇ ॥
ରାବଣ ବ୍ରହ୍ମ ଶକ୍ତି ମାର । ସୁଖେ ରହନ୍ତୁ ଲଙ୍କାପୁରୀ ॥
ଜାମ୍ବବ ମନ୍ତ୍ରୀ ପ୍ରସାଦରୁ । ରକ୍ଷା ପାଇଲୁଁ ଆପଦରୁ ॥
ଏବେ ସକଳେ ଚାଲ ଯିବା । ଅସୁର ଗୋଡାଇ ମାରିବା ॥
ରାମ ଆଜ୍ଞାରେ ସର୍ବେ ଗଲେ । ଲଙ୍କାର ପାଚେରୀ ଡେଇଁଲେ ।
ଦେଖିଲେ ଅସୁରେ ଆନନ୍ଦେ । ଶୋଇଅଛନ୍ତି ଘୋର ନିଦେ ॥
ନିଆଁ ଲଗାଇ ଘରମାନ । ପୋଡ଼ିଣ ଦେଲେ କପି ସୈନ୍ୟ ॥
ଘରୁ ଯେ ବାହାରି ହୋଇଲେ । ଗୋଡ଼ାଇ ବାନରେ ମାରିଲେ ॥
ତେତେଣ ରାବଣ ଶେଜ ମନେ । ବିଚାର କରଇ ଆପଣେ ॥
ମନ୍ଦୋଦରୀକ ଡ଼ାକି କହି । ଦେଖ ତପସ୍ୱୀ ଦୁଇ ଭାଇ ॥
ସମୁଦ୍ରେ ବନ୍ଧ ପକାଇଲେ । ସୁବେଳଗିରିରେ ରହିଲେ ॥
ଯେ ଦନୁ ଆସି ସେ ରହିଲେ । ସଂଗ୍ରାମେ ସମସ୍ତ ନାଶିଲେ ॥
ମୁଣି ମରିଲା ଇନ୍ଦ୍ରଜିତ । ସମସ୍ତ ପୁତ୍ର ନାତି ହତ ॥
ବିଚାର କର ପ୍ରାଣପତି । କୁବୁଦ୍ଧି ଛାଡ଼ର ଗୋ ମୂର୍ଖ ।
ବେଦନ କରି ମନ୍ଦୋଦରୀ । କହଇ ଶୁଣ ଦଣ୍ଡଧାରୀ ॥
ଶ୍ରୀରାମ ସ୍ୱୟଂ ଅବତାର । ସନ୍ତୁଙ୍କୁ କରବେ ନିସ୍ତାର ॥
ଦୁଷ୍ଟଦମନ କରି ସେହି । ଉଶ୍ୱାସ କରବେ ସେ ମହୀ ॥
ବହୁତ ମନ୍ଦକର୍ମ କଲ । ସୀତାଙ୍କୁ ଚୋରାଇ ଆଣିଲ ।
ନ କଲ ଭଲ ଲୋକ ବୋଲ । ଭାଇଙ୍କ ଘଉଡ଼ାଇ ଦେଲ ॥
ସେ ଯାଇଁ ଶରଣ ପଶିଲା । ଅମର ବଂଶ ମରାଇଲା ॥
ଏବେ କରନ୍ତୁ ମୋର ବୋଲ । ସୀତାଙ୍କୁ ଫେରି ଦେବା ଭଲ ॥
ନୋହିଲେ ତପସ୍ୱୀ ମାରିବ । ଏ ଲଙ୍କା ଭୋଗ ଜୟ ନୋହିବ ॥
ମନ୍ଦୋଦରୀର କଥା ଶୁଣି । ରାବଣ ଯେ କହଇ ବାଣୀ ॥
ଶୁଣ ଗୋ ପ୍ରାଣର ସଙ୍ଗାତ । ମୋ ପୂର୍ବଜନମ ଚରିତ ॥
ବୈକୁଣ୍ଠେ ଦ୍ୱାରପାଳ ଥିଲି । ଶାପରେ ଅସୁର ହୋଇଲି ।
ଜାଣଇ ରାମ ଭଗବାନ । ତାହାର ହସ୍ତେ ମୋ ଜୀବନ ॥
ମଲେ ଗୋ ମୁକତି ପାଇବି । ସୀତାଙ୍କୁ କେବେହେଁ ନ ଦେବି ।
ଏମନ୍ତ ସମସ୍ତେ ଅସୁରେ । ଯାଇଁ ଜଣାଇଲେ ଛାମୁରେ ।

ଶୁଣିମା ନେଭଦେବ ରାବଣ । ବାନରେ କାଟେ ରଣ ଭଣ ॥
ଶୁଣି ରାବଣ କ୍ରୋଧ କଲା । ସୈନ୍ୟ ସଜାଇ ବାହାରିଲା ॥
ଦେଖିଣ ବାନରେ ଭାଗିଲେ । କହିଲେ ଶ୍ରୀରାମ ଛାମୁରେ ॥
ଶ୍ରୀରାମ ଯୁଦ୍ଧକୁ ବାହାର । ସଙ୍ଗେଣ ଘେନିଣ ବାନର ।
ପଚାଶ ଯୂଥପତି ଅଗ୍ରେ । ଯୁଦ୍ଧକୁ ବାହାରିଲେ ବେଗେ ।
ଶ୍ରୀରାମ ସୁବେଶ ଯେ ହୋଇ । ପାଦେ ଗମନ୍ତି ଶ୍ରୀରଘୁସ୍ୱାମୀ ।
ସ୍ୱର୍ଗେ ଜାଣିଲେ ସୁନାସୀର । ଚଖେଣ ପିଟିଲା ଅମ୍ବର ।
ବିଶ୍ରବାସୁତ ନାଶ ଯିବ । ଆଜର ଯୁଦ୍ଧରେ ମରିବ
ରାବଣ ରଥରେ ବସିବ । ଶ୍ରୀରାମ ସଙ୍ଗେ ଯୁଝିବ ।
ତଳେ କି ଥିବେ ଦାଶରଥି । ମାତଳି ବୋଇଲେ ଯେ କଥି ।
କିଙ୍କିଣୀ ରଥ ଘେନି ଯାଅ । ରାମ ସନ୍ମୁଖେ ନେଇ ଦିଅ ।
ଏଥେ ବସିଣ ଯୁଦ୍ଧ କର । ପୌଲସ୍ତି ନାଶ ବେଗେ ମାର ।
ତକଇ ଇନ୍ଦ୍ର ଅଜ୍ଞା ପାଇ । ରଥ ଯେ କଲା ରାମ ଠାଇଁ ॥
ପଢ଼ିଲା ପାଦେ ଦଣ୍ଡ ହୋଇ । ଇନ୍ଦ୍ର ସନ୍ଦେଶ ଅଗ୍ରେ କହି ॥
ଶୁଣି ଆନନ୍ଦ ରଘୁବଂଶ୍ୟ । ମାତଲି କଲେ ଯେ ଅଶ୍ୱାସ ॥
ରଥେ ବସିଲେ ରାମ ଯାଇ । ଲକ୍ଷ୍ମଣେ ବିଭୀଷଣ ନେଇ ॥
ଚଳନ୍ତି ରାମର ଯେ ସୈନ୍ୟ । ଆନନ୍ଦେ ଘୋଷି ରାମ ନାମ ॥
ରାବଣ ସୈନ୍ୟ ସଙ୍ଗତରେ । ବସିଲା ପୁଷ୍ପକ ରଥରେ ॥
ରାମ ସନ୍ନିଧ୍ୟ ଯାଇଁ ହୋଇ । କୋପେ ବିନ୍ଧିଲା ଶର ଦୁଇ ॥
ରାମ ଛେଦିଲେ ଅଗେ ତାହା । ପୁଣି ବିନ୍ଧିଲା ଶରବାହା ॥
ପବନାସ୍ତରେ ରାମ ଛେଦ । ରାବଣ ଦେହେଁ ଗଲା ଭେଦ ।
ରାମ କୋଦଣ୍ଡେ ଗୁଣ ଦେଇ । ମାଇଲେ ରାବଣକୁ ନେଇ ॥
ଛିଡ଼ି ପଡ଼ିଲା ମୁଣ୍ଡ ତାର । ଦେଖି ହସିଲେ ରଘୁବୀର ।
ପୁଣ ଉଠିଲା କଣ୍ଠେ ଶିର । ଦେଖି ଚକିତ ରଘୁବୀର ॥
କୋପେ ବିନ୍ଧିଲେ ଲକ୍ଷେ ଶର । ପୁଣି କାଟିଲେ ଦଶଶିର ॥
ଏମନ୍ତେ ଅଷ୍ଟ ଦଶବାର । କାଟିଲେ ରାବଣର ଶିର ॥
କେତେବେଳେ ରାବଣ ନ ମଲା । ରାମଙ୍କୁ ଆଶ୍ଚର୍ଯ୍ୟ ଲାଗିଲା ।
ପୁଣି କୋପରେ ରଘୁବୀର । ଦୈତ୍ୟେ ବିନ୍ଧିଲେ ବ୍ରହ୍ମଶର ॥

ପ୍ରାଣ ଯେ ଛାଡ଼ିଲା ରାବଣ । ପଡ଼ିଲା ହୋଇ ହତଜ୍ଞାନ ।
ସ୍ୱର୍ଗେ ଦୁନ୍ଦୁଭି ନାଦ କଲେ । ଶ୍ରୀରାମ ଶଙ୍ଖ ଘୋଷ କଲେ ।।
ଦେବତାମାନେ ସ୍ତୁତି ଭାଷି । ଅର୍ଦ୍ଧ ସ୍ୱର୍ଗରେ ହେଲେ ଆସି ।
ଭାଇ ମରଣ ବିଭୀଷଣ । ଦେଖିଣ କରଇ ରୋଦନ ।।
କାନ୍ଦଇ ମନ୍ଦୋଦରୀ ରାଣୀ । ଆବର ଯେତେକ ତରୁଣୀ ।।
ପ୍ରବୋଧ କଲେ ରାମ ଯାଇଁ । କୋମଳବଚନେ ବୁଝାଇ ।।
ବିଭୀଷଣକୁ ବୋଧ କଲେ । ଲଙ୍କାରେ ରାଜପଣ ଦେଲେ ।।
ମନ୍ଦୋଦରୀକୁ ରାମ କହି । ବିଭୀଷଣକୁ ସେବ ଯାଇ ।।
ଆଜ୍ଞା ପାଇଣ ମନ୍ଦୋଦରୀ । ସେବିଲା ସ୍ୱାମୀ ପ୍ରାୟେ କରି ।।
ପଡ଼ିଲା ରାମପଦେ ଶୋଇ । ଶୁଣମା ରଘୁକୁଳସାଇଁ ।।
ଆଜ୍ଞା ଦିଅନ୍ତୁ ରଘୁନାଥ । ଆସନ୍ତୁ ଜନକ ଦୁହିତ ।।
ଦର୍ଶନ କରନ୍ତୁ ସେ ଆସି । ଶ୍ରୀରାମ କହନ୍ତି ହୃଦେ ହସି ।
ସୀତାରେ କାର୍ଯ୍ୟ ନାହିଁ ଆଉ । ଯେଣେ ତା ଇଚ୍ଛା ତେଣେ ଯାଉ ।।
ଶୁଣି କହଇ ବିଭୀଷଣ । ତୋ ବିନୁ ନ ଜାଣଇଁ ଆନ ।।
ଏତେ ବୋଲିଣ ମହାପାତ୍ର । ଅନେକ ବୁଝାଇ କହନ୍ତି ।।
କହନ୍ତି ସଙ୍ଗୀ ହନୁମାନ । ବୋଧ ନ ଯାନ୍ତି ରଘୁନାନ ।।
ସ୍ୱର୍ଗୁଁ ଆଇଲେ ସୁରଦେବା । ଅବଧ ତାଙ୍କ ସଙ୍ଗେ ବ୍ରହ୍ମା ।।
ସୁବଳ ପଙ୍କତେ ମିଳିଲେ । ରାମଙ୍କୁ ବୁଝାଇ କହିଲେ ।।
ପରମ ସତୀ ଶିରୋମଣି । ନିର୍ଦ୍ଦୋଷୀ ଜନକ ଦୁଲଣୀ ।।
ବ୍ରହ୍ମା ବଚନ ଦୃଢ଼ କଲେ । ସୀତାଙ୍କୁ ଆଣେ ଯା ବୋଇଲେ ।।
ଆଜ୍ଞା ପାଇଣ ହନୁମନ୍ତ । ସୀତାଙ୍କ ପାଶକୁ ତ୍ୱରିତ ।।
ପଶ୍ଚାତ ଯୂଥପତି ଗଲେ । ବାନରେ ସମସ୍ତେ ଧାଇଁଲେ ।।
ଯାଇଁ ଦର୍ଶନ କଲେ ସୀତା ° । କହିଲେ ଶ୍ରୀରାମ ବାରତା ।।
ମାଗୋ ବଦନ ହୋଇ ଅପ । ପୂରିଲା ଆଜ ଅଭିଳାଷ ।।
ଶୁଣିଣ ଜନକ ଦୁହିତା । ଆସନୁ ଉଠିଲେ ତ୍ୱରିତା ।।
ପଦେ ଗମନ କରି ମାତ୍ରେ । ଦର୍ଶନ କଲେ ରାମ ରାତ୍ରେ
ଦୂଷଣ କଲେ ରାମ ତହିଁ । ନିଧର୍ମ ଅଗ୍ନି ମଧ୍ୟେ ଦେଇ ।।

ତହିଁରୁ ହୁଅନ୍ତେ ବାହାର । ଦେଖି ହରଷ ରଘୁବୀର ॥
ସନ୍ନିଧ୍ୟେ ବସାଇଲେ ନେଇ । ଆନନ୍ଦ କେ ପାରିବ କହି ॥
ଅଯୋଧ୍ୟା ହୋଇଲେ ବାହାର । ବସିଲେ ପୁଷ୍ପକ ଉପର ॥
ଲଙ୍କାରେ ରହି ବନ୍ଧୁଜନ । ଉଚ୍ଚାଇ ରାଜା ବିଭୀଷଣ ।
ସମସ୍ତ ସୈନ୍ୟ ରଥେ ବସି । ଅବର ବିଭୀଷଣ ଆସି ॥
ରଥ ବାହୁଲେ ଅଯୋଧ୍ୟାକୁ । ଦେଖାନ୍ତି ସମସ୍ତ ସୀତାଙ୍କୁ ॥
ନନ୍ଦଗ୍ରାମରେ ରଥବର । ପ୍ରବେଶ ହୋଇଲା ସତ୍ୱର ॥
ଭେଟିଲେ ରାମଙ୍କୁ ଭରତ । ଆବର ପ୍ରିୟାନ୍ଧ ସମସ୍ତ ॥
ଶ୍ରୀରାମ କଲେ ତାଙ୍କୁ କୋଳ । ପୁଚ୍ଛନ୍ତି ବାରତା ସକଳ ॥
ଘରେ ଅଛନ୍ତି ନଗ୍ରଜନ । କହନ୍ତୁ କୈକେୟୀ ନନ୍ଦନ ॥
ଶ୍ରୀରାମ ଆଗେ ଭରତବୀର । କହନ୍ତି ବଚନ ମଧୁର ॥
ଯେ ଦିନୁ ଗଲ ଭ୍ରାତୃସ୍ୱାମୀ । ଅଯୋଧ୍ୟା ପୁରେ ସୁଖ ନାହିଁ
ନ ଦେଖି ତୁମ୍ଭର ବଦନ । ନଗରେ ହୋନ୍ତି ଛନ ଛନ ॥
ଶ୍ରୀରାମ ଆଗେ ଏହା କହି । ଲକ୍ଷ୍ମଣ ଭରତ ପଦେ ଶୋଇ ॥
ସୀତାଙ୍କ ଆଗେ ଭରତବୀର । କରଇ ପାଦେ ନମସ୍କାର ॥
ଭରତ ରଥେ ବସାଇଲେ । ସେଠରୁ ବେଗେ କରି ଗଲେ ॥
ପବନ ସ୍ୱାମୀ ରଘୁବର । ରଥ ବାହୁଲେ ଶରତର ॥
ଅଯୋଧ୍ୟାପୁରରେ ପ୍ରବେଶ । ଦେଖି ହରଷ ରଘୁଶିଷ ।
ମଙ୍ଗଳ ବାଦ୍ୟ ନାଦ ଘୋର । ଧ୍ୱନି ଶୁଭିଲା ଛନମ୍ବର ॥
ଢୋଲ ଢମକ ବାଦ୍ୟ ଭେରି । ବଜାଇ ମଙ୍ଗଳ ମହୁରି ।
ଏମନ୍ତେ ନାନା ବାଦ୍ୟ ବାଜେ । ଅଯୋଧ୍ୟା ପୁରେ କଲେ ବିଜେ
ଶୁଣି ସମସ୍ତେ ନଗ୍ରଜନ । ରାମଙ୍କୁ କରନ୍ତି ଦର୍ଶନ ॥
ଶ୍ରୀରାମଙ୍କର ବଚନ ଶୁଣି । ଦର୍ଶନେ ଧାମନ୍ତି ତରୁଣୀ ॥
କେହୁ ବୋଲନ୍ତି କସ୍ତୁରିଲୁଁ । ଶ୍ରୀରାମ ନୟନେ ଦେଖିଲୁଁ ।
ନିଜ ନଗରେ ରାମ ଗଲେ । ଜନନୀମାନଙ୍କୁ ଦେଖିଲେ ।
ଶ୍ରୀରାମ କଲେ ନମସ୍କାର । ଧରଣ ମାତାଙ୍କ ପୟର ।
କଲ୍ୟାଣ ଜନନୀଏ କଲେ । ଅନ ମନୋଦ୍ଧ କରିବେ ।

ନିଜ ନଗରେ ରାମ ଗଲେ । ସୀତା ରାମ ପାଟେ ରହିଲେ ।
ଏମନ୍ତେ ଗଲା ବନ ଗୃହ । ଶ୍ରୀରାମ ଅଭିଷେକ ସାର ।
ବିଭୀଷଣକୁ ରାଜ ଦେଶ । ଏବେ ତୋ ଚଳ ନିଜଦେଶ
ସୁଗ୍ରୀ ଅଙ୍ଗଦକୁ ରାଇଲେ । ନିଜ ରାଜ୍ୟରେ ସେ ରହିଲେ
ଆଜ୍ଞା ପାଇଣ ସୁଗ୍ରୀ ଗଲା । ନିଜ ରାଜ୍ୟରେ ସେ ରହିଲା ॥
ବହୁତ ଧନ ରତ୍ନ ଦେଲେ । ମେଲାଣି ମାଗି ସୁଗ୍ରୀ ଗଲେ ॥
ପଚିଶ ଯୂଥପତି ରାଇ । ମେଲାଣି ଦେଲେ ରଘୁସାଇଁ
ଜାମ୍ବବ ମନ୍ତ୍ରୀଙ୍କି ହକାରି । ଏବେ ତୁ ଯାଅ ନିଜପୁରୀ ॥
ପବନସୁତକୁ ଆଶ୍ୱାସ । କହି କହନ୍ତି ଯାଅ ଦେଶ ॥
ଚିରଜୀବୀ ହେଉ ଶରୀର । ଏବେ ତୁ ଚଳ ନିଜପୁର ।
ଆଜ୍ଞା ପାଇଣ ହନୁ ଗଲା । ନିଜ ରାଜ୍ୟରେ ସେ ରହିଲା ॥
ପାଞ୍ଚ ମନ୍ତ୍ରୀଙ୍କି ଡକାଇଲେ । ଶିରରେ ବସ୍ତ୍ର ବନ୍ଧାଇଲେ ।
ଆସିଲେ ଋଷି ବିପ୍ର ଯତି । ବହୁତ ଧନ ରତ୍ନ ଦିଅନ୍ତି ।
ଏମନ୍ତେ ଜଣେ ଜଣେ ତୋଷି । କେତେକ ମୁଁ କହିବ ବିଶେଷି ।
ଏତେ କହିଣ ବ୍ୟାସ ମୁନି । ଧର୍ମନନ୍ଦନ ଆଗେ ଭଣି ।
ଈଶ୍ୱର ପାର୍ବତୀ ଆଗେଣ । କହିଲେ ଗ୍ରନ୍ଥ ରାମାୟଣ ॥
ଶ୍ରୀରାମ ପାଦେ ସୁମରଣ । ଏ ରାମ ଚରିତ ସମ୍ପୂର୍ଣ୍ଣ ।
ସୁଜନେ ଦୋଷ ମୋ ନ ଧର । କହଇ ବିପ୍ର ଲକ୍ଷ୍ମୀଧର ॥
ବିଶ୍ୱାସେ ଗାଇବ ଶୁଣିବ । ଧର୍ମକୁ କେବେହେଁ ନ ଲଙ୍ଘିବ ॥
ସଂସାର ଦେଖ ମହାଜଳ । ଧର୍ମ ଅଧର୍ମ ବେନି ଫଳ ॥
ଧର୍ମ ଧରିଣ ଏ ଜଗତ । ଧର୍ମରେ ଦ୍ରୁବ ଅଛଯାଉ ॥
ରାମ ଲକ୍ଷ୍ମଣ ବେନି ପାଦେ । ସୁଜନେ ଚିନ୍ତ ଅପ୍ରମାଦେ ॥
ମୁଁ ଛାର ମନୁଷ୍ୟ ମାତର । ମୁଁ ତାହିଁ କହିବ ଗୋଚର ॥
ଶ୍ରୀରାମ ଚରଣକୁ ଆଶ । ଶରଣ ଲକ୍ଷ୍ମୀଧର ଦାସ ॥

— ସମାପ୍ତ । —

କଟକ ଚନ୍ଦ୍ରଯନ୍ତ୍ର ପ୍ରେସରେ ଶ୍ରୀ ଚିନ୍ତାମଣି ଦାସଙ୍କ ଦ୍ୱାରା ମୁଦ୍ରିତ

# ହନୁମାନ ପୁସ୍ତକାଳୟ ।

ହନୁମାନ ବଜାର । ପୋ । ବ୍ରହ୍ମପୁର ଜି ଗଞ୍ଜାମ ।

ନିମ୍ନଲିଖିତ ପୁସ୍ତକମାନ ଓ ଅନ୍ୟାନ୍ୟ ଯାବତୀୟ ପୁସ୍ତକମାନ ଆମ୍ଭ ନିକଟରେ ମିଳେ । ଗ୍ରାହକଗଣ ଇଚ୍ଛାକଲେଅନାୟାସେ ପ୍ରାପ୍ତହେବେ

| | | | |
|---|---|---|---|
| ଶ୍ରୀକୃଷ୍ଣଙ୍କ ପାଠପଥ୍ୟ | ଟ ୦ / | ଗୋବର୍ଦ୍ଧନଚନ୍ଦ୍ର ଗୀତ ବା | |
| ଶ୍ରୀକୃଷ୍ଣଙ୍କ ଧୂଳିଖେଳ | ଟ ୦୲ ୯ | ଟୀକା ଗୋବର୍ଦ୍ଧନଚନ୍ଦ୍ର | ଟ ୦ । |
| ଗୋପଳଙ୍କ ଓଗାଳ | | ମଙ୍ଗଳା ଶାରଳାସ୍ତୁତି | ଟ ୦ ୲୬ |
| ୧ ମ ଭାଗ | ଟ ୦ ୵ | ରାମ କୋଇଲି | ଟ ୦ ୲୩ |
| ଲକ୍ଷ୍ମୀପୁରାଣସୁଆଙ୍ଗ | ଟ ୦ ୷ | ସୀତା କୋଇଲି | ଟ ୦ ୲୩ |
| ଜାଞ୍ଜି କାବେରୀଚରିତ | ଟ ୦ /୬ | ନାୟକ ନାୟିକାଲକ୍ଷଣ | ଟ ୦/ |
| ସମୁଦ୍ରଭ୍ରମଣ | ଟ ୦ /୩ | ଅଷ୍ଟକୃଷ୍ଣଲୀଳା ଓ | |
| ଜ୍ୟୋତିଷତତ୍ତ୍ୱ ଦର୍ପଣ | ଟ ୦ /୬ | ବଳବାମନାଷ୍ଟକ | ଟ ୦ / |
| ପଞ୍ଚଳ ନାୟକମାନଙ୍କ ଯତଗ | | କଳାମାଣିକ | ଟ ୦ ୲୬ |
| ଚନ୍ଦ୍ରା ବିଷ୍ଣୁର | ଟ ୦ / | ପୁନେଇଖିଆ | ଟ ୦ ୲୯ |
| ଜାତିଯାତ୍ରକନଷ୍ଟପ୍ତ | ଟ ୦ / | ବ୍ରଜଲୀଳା ସ୍ତୁ: (ଗୋପାଳ) | ଟ ୦ /୬ |
| ଶବରଜନ୍ମ | ଟ ୦ / | ସତ୍ୟଭାମା ବୃନ୍ଦାବନ | ଟ ୦ /୬ |
| ପ୍ରମିଳାଯୁଦ୍ଧ | ଟ ୦ ୵ | ଗୃହଦେବୀ କାନ୍ଦ | ଟ ୦ /୩ |
| ସଙ୍ଗୀତସାରସଂଗ୍ରହ | ଟ ୦ /୩ | ପ୍ରେମପଦ୍ୟାସିମାଛନ୍ଦ | ଟ ୦ ୷ |

ପ୍ରକାଶ ଥାଉକି ଆମ୍ଭ ନିକଟରେ ଏତ୍ତା ଛଡ଼ା ନାନାପ୍ରକାର ମଠ୍ ପାଟ, ଟପର, ଧୋତି; ଗୃହଦର, ଶାଢ଼ୀ ପ୍ରଭୃତି ଏବଂ ସୁନାରୂପାର ଦେଶୀ ଓ ବିଲାତି ଅଳଙ୍କାରମାନ ପ୍ରସ୍ତୁତ ଅଛି । ମୋଫସଲସ୍ଥ ଗ୍ରାହକଗଣ ନେବାକୁ ଇଚ୍ଛାକଲେ ସେମାନେ ନିଜର ନାମ, ଧାମ, ପୋଷ୍ଟଅଫିସ ସ୍ପଷ୍ଟ ଅକ୍ଷରରେ ଲେଖି ଦରଦ ଜିନିସର ଏକଚତୁର୍ଥାଂଶ ମୂଲ୍ୟ ମନି ଅର୍ଡର କରି ନିମ୍ନଲିଖିତ ଠିକଣାରେ ପଠାଇଲେ ଜିନିସମାନ ପଠାଯାଏ ଏହି ଠିକଣାକୁ ପତ୍ର ଲେଖନ୍ତୁ ।

ଶ୍ରୀ ଶ୍ୟାମସୁନ୍ଦର ଗନ୍ତାୟତ ବୁକ୍‌ସେଲର ହନୁମାନ ପୁସ୍ତକାଳୟ ।

ହନୁମାନ ବଜାର ପୋ: ବ୍ରହ୍ମପୁର; ଜି: ଗଞ୍ଜାମ ।